JAJATI
(A complete large poem)
by Dr. Sarat Ch. Pradhan
Professor of Oriya, Sambalpur University
Publishers : Vidyapuri, Cuttack 753 002
1991

ପ୍ରଥମ ପ୍ରକାଶ
ଉତ୍କଳ ଦିବସ ୧୯୯୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରକ
ଦିବାକର ମିଶ୍ର
ଗୋସ୍ୱାମୀ ପ୍ରେସ୍
ଆଲାମଚନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୨୮·୦୦

୧

ହୁତ୍ ହୁତ୍ ଜଳେ ନିଆଁ
ଦେହ ଓ ମନରେ
ହୁତ୍ ହୁତ୍ ହୁତାଶନ
ଶୂନ୍ୟରୁ ଶୂନ୍ୟରେ ।

ଏ ନିଆଁ ବି ଏକ ମନ୍ତ୍ର
ବୀଜ ଅକ୍ଷରର
ଏ ନିଆଁ ବି ଏକ ସ୍ୱପ୍ନ
କମଣ୍ଡଳୁ ହସ୍ତ ଯେତେ
ଯୋଗୀ ସନ୍ନ୍ୟାସୀର ।

କେମନ୍ତେ ଶମିବ ନିଆଁ
ରାଣୀ ହଂସପୁରରେ
କେମନ୍ତେ ଲଭିବ ନିଆଁ
କାମ୍ୟକ ବନରେ ।

ଏ ନିଆଁର ଶେଷ କାହିଁ
ଏ ନିଆଁର ଆଦ୍ୟ ଅବା କାହିଁ ?
ମୋ ମନରେ ଜଳେ ନିଆଁ
ମୁଁ ବି ଏକ ବୈତରଣୀ ନଈ ।

ମୁଁ ଜଳୁଛି ଜ୍ୱଳନରେ
ଯୁଗ ଯୁଗ ଧରି
ପିଠିରେ ନିଆଁର ବୋଝ
ଅକ୍ଷିରେ ମୋ ନିଆଁର ବୁଜୁଳ ।

ଦେଖ ଯେତେ ସଭ୍ୟଜନ
ହାତରେ ମୋ
ଅଳଭ୍ୟ ଅରଣି;
କେତୋଟି ପୁତଳ କାଠ
ଘଷିଲେ ବି ନିଆଁ ଜନ୍ମେ;
କମଣ୍ଡଳୁ ଜଳ ସିଞ୍ଚି
ଅମାନିଆ ନିଆଁ ଯେତେ
ଲିଭାଇଦେଲ ପ୍ରାଣମୂର୍ଚ୍ଛି ।
ଜମାରୁ ଲିଭେନି ।

ହୁତ୍ ହୁତ୍ ଜଳେ ନିଆଁ
ଚୁଲ୍ଲି କୋଠରୀରେ,
ମୁଁ ବି ଜଳ ସ୍ୱପ୍ନ ଦେଖେ,
ନିଆଁଙ୍କର ନିଆଁ ସାଥେ
ନିତି ଖେଳିବାରେ ।

ନିଆଁ ଏକ ଆକର୍ଷଣ
ଦୂର ପାହାଡ଼ର,
ଲେଲିହାନ ପ୍ରଜ୍ୱଳନ
ମନ ଓ ମନର ।

ସବୁଠି ନିଆଁର ନାଚ
ଆକାଶ ଅବନୀ
ନିଆଁ ଘେରେ ବସେ ମୁହିଁ;
ଦିବସ ରଜନୀ ।

ବିଚିତ୍ର ଏ ଅନୁଭବ
ନିଆଁ ଲୁଚିଗଲେ,
ନିଆଁ ପାଇଁ ମନ୍ତ୍ର ପଢ଼ି
କେତେ କୁନ୍ତୀ
ବେଳ ଅବେଳରେ
ଯଦ୍ଧ ଡାକୁଥିଲେ ।

ନାଆଁରେ ଖେଳିବା ଆସ
ହେ ଧର୍ମ ଦେବତା,
ନାଆଁ ନେଇ ହେ ପବନ
କୁହ ଥରେ କଥା ।

ନାଆଁ ଦେଖି ଧାଇଁ ଆସ
ଆକାଶ ଦେବତା
ନାଆଁ ପାଖେ ରହିଗଲେ
ଲକ୍ଷେ ଆଖି ପତା ।

ସବୁରି ନାଆଁର ଲୀଳା
ନାଆଁର ବନ୍ଧନ
ସମୁଦ୍ରରେ ନାଆଁ ଜଳେ,
ନାଆଁ ପାଇଁ ନିଭୃତରେ
ଗାଉଛି ମୁଁ ଗୀତ ।

କିଏ ତୁମେ ମନ୍ତ୍ର ପଢ଼
ହେ ଅଗ୍ନାୟୁ ସ୍ୱାହା,
କିଏ ତୁମେ ନିର୍ବାପିବ
ମନରେ ବରଷା ।

୨

ଝୁରିଆଉଛି
ଫୁଲ୍ ସଭ୍ୟ
ଯଦ୍ୱ ନାଆଁଙ୍କର,
ପକ୍ଷୀର କାକଳି ଯେତେ
ହତଭାଗା
ଯଯାତିର
ଭଙ୍ଗା ଭଙ୍ଗା ସ୍ୱର ।

କିଏ କାହିଁ
ମୁହିଁ ସଂଗେ
ଯାନ୍ତ୍ରିର ମୁଁ ଜହ୍ନ;
ଆପଣାଙ୍କର
ପ୍ରଶ୍ନ କରେ,
ପୁଣି ଦେଖେ
ଆକଣ୍ଠ।
ତୃଷ୍ଣାରଙ୍ଗା
ଅଥଚ ବିଷଣ୍ଣ।

ସ୍ୱର ଶୁଣେ
ଅନାହତ ସ୍ୱର ;
କେଉଁ ଆକାଶର ?
ମନ୍ତ୍ର ପଢ଼ି
ଦେହ କୀଳା ମନ୍ତ୍ର
କେଉଁ ଧରଣୀର ?

ସ୍ୱନ ଏବଂ ମନ
ଖେଦୁଅର ପାଣିଖରା
ଟିକ୍ ଟିକ୍
ଅପରାହ୍ଣ
ଲଳିତ କରୁଣ।

ଗୃହଆଡ଼େ
ଶରତର
ଉଦାସିଆ ମେଘ।
ବାଘର ହେଣ୍ଟାଳ ଶୁଣେ,
ଅଦୂରତର
ବେଣାପାଟ
ଅଶିଣ ପରବ।

ଯଯାତି ମୁଁ
ମହାରାଜା
ହକାରୁଛି
କଏ ଅଛ କାହିଁ ?
ଗହ ଗହ
ଧାନ ଖେତ,
ମୁଁ ଧରିବ
ପ୍ରଜାପତି,
ଅଦୂରରେ
ଝଲମଲ
ନଈ ଯାଏ ବହି ।

୩

ମନେ ପଡ଼େ
ଫୁଲ ଫଳ
କେତେ ଆକାଶର ।
ନିଘୁଟିଆ
ଅରଣ୍ୟର
ଛଳ ଛଳ
ଦୁଇ ଆଖି
ନିଃସଙ୍ଗ ବେଳାର ।

ସବୁ ଆଜି
ମହାସ୍ମୃତି
ଅଶିଣ ଖର୍ପରର,
ହମ୍ବାକ୍ଷିତ
ଗାଈ ପରି
ବତ୍ସଟଣ

ମୃତ ଅବା
ମୋର ଅଗଣାରେ ।

କଏ ଆସ
ଆଗ ପଛ
ବାମ ଡାହାଣରେ;
କଏ ଆସ
ଅଧଃ ଉର୍ଦ୍ଧ୍ୱ
କାଯ୍ୟାରେ ଗୁସ୍ୟାରେ ।

ତୁମେ କ'ଣ
ସ୍ୱପ୍ନ ?
ନଈ ମୁହାଣର !
ତୁମେ କ'ଣ
ତୃଷ୍ଣା ?
ଗୁହା ମଣିଷର !

କଏ ଆସ
ଆଦିଗନ୍ତ
ଆକାଶ ଅବନୀ;
କଏ ଡାକ
ମୋ ସଙ୍ଗରେ
ଦିବସ ରଜନୀ ।

୪

ହୃତ ବୀର୍ଯ୍ୟ
ଯଯାତି ମୁଁ
ଲେଉଟୁଛି
କେଉଁ ଅଗଣାରେ;
ବଶିଷ୍ଠର

ସ୍ୱପ୍ନ ଦେଖେ
ପଉଷର
ଉପକଣ୍ଠେ
ମୃତ ଅଶିଣରେ ।

ଅଶିଣ
ଆସିଲା ଦିନେ
ଭିଡ଼ମୋଡ଼ି ହୋଇ ।
ମୁଁ ଉଠିଲି
ଅଶିଣକୁ,
କାନ୍ଦ କାନ୍ଦ
କିଶୋର ମୁଁ;
କିଏ ମୋତେ
କହୁଥିଲା—
'ମହାରାଜ
ଅଶିଣ ବ
ଭିକ୍ଷା ମାଗେ
ମୁଷ୍ଟି ଭିକ୍ଷା
ଦିଅ ବାରେ
ହେ ଜଗତସାଇଁ ।'

ସବୁ ଆଜି
ଅବଲୁପ୍ତ
କାହିଁ ଲୋକବାକ
କାହିଁ ମୋର
ସେହି ରାଜ୍ୟ
ପରଜା ପାଟକ ।
କାହିଁ ଗଲେ

ପରଗୃହୀ
ବୟସ୍ୟ, ସେବକ ।

ମୁଁ ବସିଛି
ପଞ୍ଜରର
ଏରୁଣ୍ଡି ବନ୍ଧନରେ,
ଜିଭ ମୋର
ଲମ୍ବ ଲମ୍ବ,
ନଖ ଦେହେ
ସାପ ସେତେ
ଉବୁ ଟୁବୁ
ଅକାତ ଜଳରେ ।

୪.

କିଏ ତୁମେ
ଶ୍ୱେତକେତୁ ?
ମାର୍ଗ ଓ ଋତର ।
କିଏ ତୁମେ
ବନ୍ଧ ବାନ୍ଧ
ଝରମାନଙ୍କର ।

ଠିଆ ହୁଅ
ସତେ ଅବା
ବିନ୍ଧ୍ୟ ପରବତ;
ରୁଦ୍ଧ କର
ଗତି ମୋର
ରୁଦ୍ଧ କର
ଏକ ଚକ୍ର ରଥ ।

ମୁଁ ଦେଖିଛି
ତୁମ ରୂପ
ଘରେ ଓ ବାହାରେ,
ଉର୍ବଶୀର
ନୃତ୍ୟ ଭଙ୍ଗୀ
ଅର୍ଜୁନର
ନିଷ୍ପାପ ଆଖିରେ ।

କିଏ ମୋତେ
ପଠାଇଛ
ତଳାତଳ
ଯେଉଁ ପାତାଳକୁ;
ମୁଁ ଖୋଜୁଛି
ମଯୂଯାନଟିଏ
ଊର୍ଦ୍ଧ୍ୱ ଉଠିବାକୁ ।

ସ୍ୱର୍ଗ ପୁରର
ମେଘନାଦ
ପ୍ରାଚୀର କବାଟ
ଯଯାତି ମୁଁ
ଡାକୁଅଛି
ଖୋଲିଦିଅ,
ଖୋଲିଦିଅ ବାଟ ।

୭

ପୁଣି କେଉଁ
ଅଶିଣର
ଅଗଣିତ ସ୍ୱର
ମୋ ସ୍ମୃତିରେ

ହେଲେ ଯଦି
ଏକ ଏକ
କୃଷ୍ଣ ଅବତାର ।

ଖୋଜୁଥିଲେ
ବାରମ୍ବାର
ଧେନୁ ଓ ଧଗଳୁ;
ବୃଷଭର
ବସ୍ତ୍ରକ୍ରୀଡ଼ା
ଅବା ଦେଖିବାକୁ ।

ଗଈଁଝାଇଁ
ଖରାବେଳେ
କେଉଁ ପାହାଡରେ,
ପତ୍ରମାନେ
ଝାଉଁଳିଲେ
ଯଦି ମୋ ଆଖିରେ;

ମୁଁ କହିଲି—
ହେ ଅଶିଣ
ହେ ମୋର ମଧ୍ୟାହ୍ନ
ସ୍ୱପ୍ନ ଯଦି
ଝଲମଲ
ମିଳୁ ମୋତେ
ପିଣ୍ଡାପରେ
ତେଲ୍ପତ୍ରଗ
ପିଣ୍ଡୋଦକ ଦାନ ।

ବଢ଼ାଏ ମୁଁ ହାତ
ମୋ ହାତ ବ

ଆଡେ଼ାଉଛି
ଲକ୍ଷେ ପର୍ବତ ।

୭

ଆଚ୍ଛାଦନ
ବନ ଖାଳିକାରେ
ମୁଠ ମୁଠା
ଶେଫାଳି ଓ
କଣ୍ଟାକୁଠି
କାଶତଣ୍ଡୀ
ଗପ କଲାବେଳେ;

କିଏ ମୋତେ
ଡାକିଥିଲା,
ଲଜ୍ଜାନତ
ଆଖି ଦ୍ଵୟ ଖୋଲି
ଗ୍ରୀଷ୍ମ କୂପ
ତୋଳିନିଅ
ଊର୍ଦ୍ଧ୍ଵବାହୁ ମୁଁ ନାରୀ ।

ସବୁ ଯନ୍ତ୍ର
ଲୁଚକାଳି
ଖରା ଓ ତାରାରେ ।
ଅନୁରାଧା
ସ୍ଵାତୀ ଅବା
ଚର୍ଚ୍ଚିତ ଚନ୍ଦ୍ରାରେ ।

ଗୃହ ଆଡ଼େ
ତାରାଙ୍କର
ଲୁବ୍ଧ ସମାବେଶ

ମୁଁ ବି ଖୋଜେ
ଶାପମୁକ୍ତି,
ଟୋଟାଏ ପ୍ରଭାସ ।

ଯେଥିପି ମୋ
ସତ୍ତ୍ୱ ହଜେ
ତୁମର ଜଠରେ
ତୁମେ ମୋ
ଜନମ ଜାୟା
ମର୍ତ୍ତ୍ୟ ଓ ମୃତ୍ୟୁରେ ।

୮

ମନେ ପଡ଼େ
ଆଉ ଏକ
ଅସଜଡ଼ା
ଅବିନ୍ୟସ୍ତ
ଶୁଭ୍ର ଶେଫାଳିକା ;
ସୀମାହୀନ
ଆକାଶର
ଏକଇ ତାରକା ।

ଜାଳି ଦିଏ
ଅହରହ
ତାହାର ଶିଖାରେ,
ରାଜା, ରାଜ୍ୟ
ସିଂହାସନ
ରାଜ ବଗିଚୁରେ;

କିଏ ମୋତେ
କହିଥାଏ

ଖୋଲ ନାହିଁ ନାହିଁ ।
ନାହିଁ ମଧ୍ୟ
ହିଁ ଟିକ
ବୁଝା ପଡ଼
ବୁଝା ଯାଏ ନାହିଁ ।

ପ୍ରତେ ହୁଏ
ସତେ ଅବା
ନଦୀଧର ବନ
ଆପଣାରେ
ପୋଡ଼ ଜାଳେ,
ଜାଳବାଟା
ତାର ଅବା
ଏକମାତ୍ର ଧର୍ମ ।

ଏ ଜ୍ୱଳନ
ବ୍ୟାପି ରହେ
ଭୂମିରୁ ଭୂମାକୁ ;
ସ୍ନାୟୁରେ
ସନ୍ନ୍ୟାସୀଙ୍କର
ଆତ୍ମାହୁତ
ଯଜ୍ଞ ଦେଖିବାକୁ ।

ମୋର ତେବେ
ମୁକ୍ତି କାହିଁ
ସେ ତରୁ ଶାଖାରୁ ;
ବେତାଳ ଯେ
ଝୁଲି ରହେ
ଜନ୍ମ ଓ ଜନ୍ମରୁ ।

୯

କିଏ ତୁମେ
ମହାକାଳ
ହୁଏତ ବିକ୍ରମ
କିଏ ତୁମେ
ମହାମୁଦ୍ରା
ହୁଏତ ସଂଭ୍ରମ ।

ମୋ ଦେହରୁ
କାଢ଼ି ନିଅ
ବେତାଳମାନଙ୍କୁ
ମୋ ରକ୍ତରେ
ଅଛି ଯେତେ
ମହୁମାଛି
ଆଉ ମୋର
ଅନ୍ଦେହୀ ସତ୍ତାକୁ ।

ଚତୁର୍ଦ୍ଦିଗେ
ଘୋଷଯାତ୍ରା
ଅଂସଖ୍ୟ ପାଦର ;
ଗୃହଆଡ଼େ
ସ୍ୱୟମ୍ବର
ହନୁମନ୍ତାଙ୍କର

ଯଯାତି ମୁଁ
ଗୃହିଁ ରହେ
ଦୂର ଆକାଶକୁ ;
କ୍ଳାନ୍ତ ଚକ୍ଷେ
ରଙ୍ଗ ଛଡ଼ା
ବିବର୍ଣ୍ଣ ପୃଥିବୀକୁ ।

ହଂସଟିଏ
ନାଚେ କେଉଁ
ହ୍ରଦ ଦର୍ପଣରେ ।
ଅରଣ୍ୟର
ସ୍ୱପ୍ନ ଘାଟେ
ଯେଉଁ ମୁହୂର୍ତ୍ତରେ ।

୧୦

ମୁଁ କହିଲି
ସମସ୍ତଙ୍କୁ
ହୁଅ ବାହର
ବୁଢ଼ୀ ଅସୁରୁଣୀ;
ହାତେ ଶୋଭୁ
କଳା ଧଳା ଫୁଲ ।

ବାଟୋଇଙ୍କୁ
କହିଦିଅ
'ଏଇ ଦେଖ
ଜହ୍ନର ସହର ।'

ନିଦସ୍ନାନ
ଏ ସହର
କୁଳୁ କୁଳୁ
ଝରଣା ଓ
ମାଳ ଚଢ଼େଇର ।

ଯଦି କେବେ
ପାଦ ପଡ଼େ

ସେହି ସହରରେ
ଅସ୍ଥିର ସେ
ଉପତ୍ୟକା
ନିଷିଦ୍ଧ ନଗରେ ।

କିଏ ମୋତେ
ବାନ୍ଧି ରଖେ
ପଣତ କାନରେ ।
ଲାଜ ସଜ ସଜ ମୁହଁ
ହୃଦ ଦର୍ପଣରେ ।

ପୁଣି ଦେଖି
ଶୁହୁଁ ଥାଏ
ନୀଳ ଗଗନକୁ
ଅସଂଯତ
ତାରାଙ୍କର
ଗୀତ ଶୁଣିବାକୁ ।

ତାହା କ'ଣ
ବାର୍ତ୍ତା
ତୁମର ଓ ମୋର ?
ତାହା କ'ଣ
ଡାକ
ଦୁଇ ସୁପର୍ଣ୍ଣୀର ?

୧୧

କିଏ ମୋତେ
କରି ଦିଏ
ଧୂସର ପାହାଡ଼,

ମୋ ଆଖିର
ସ୍ୱପ୍ନ ନଯତେ
ଚୂନା ଚୂନା ମେଘ ।

ଖୋଜୁଥାଏ
ଅଗନାଗ୍ନି
ବନସ୍ତ ଭିତରେ
କାଚକେନ୍ଦୁ
ଝର ଅବା
ଖଡ଼ ଗୁଡ଼ାଳରେ ।

ବାଘ ସିଂହ
ଟର୍ଜି ଉଠେ
ବନ ଓ ମନର
ସୁନାଶିର
ଧନୁ ଅବା
ଲକ୍ଷ ଯୋଜନର ।

ନାଚୁଥାଏ
ମୋ ଆଖିର
ଏପାଖ ସେପାଖ
ମୁଁ ସ୍ମରଇ
ଜହ୍ନରାତି
ମୁଁ ଦେଖଇ
ପକ୍ଷୀର କାକଳି ।

ସବୁ ମୋର
ମନେ ପଡ଼େ
ଜହ୍ନ ଉଠିଗଲେ ;
ମୁଁ ତୁମକୁ
ଖୋଜି ବୁଲେ
ଫୁଲମାନେ

ଝୁପ୍ ଝାପ
ଗପ କଲାବେଳେ ।

ତୁମେ କେବେ
ହୋଇଯାଅ
ଏକ କୁଆଁ ତାରା
ମୁଁ ବି ଖୋଜେ
ସମୟର
ଠିକ୍ ଠିକ୍ ଶବ୍ଦ ।
ଆଲୁଅର
ଗୁଲଗୁଲିଠା,
ମୁଁ ବି ଶୁଣେ
ଅସ୍ତ୍ରମାନ
କହନ୍ତିର
ନିଭୃତ ଇସାରା ।

ଝିନଝିନ
ହୋଇଯାଏ
ହେମାଳ ପବନ;
ମୁଁ ବି ହୁଏ
କାନ୍ଦ କାନ୍ଦ
ଲେଡ଼ା ମୋର
ଅନନ୍ତ ଶୟନ ।



୧୨

ହେଠ ମାଥ
ଯଯାତି ମୁଁ
ଧର୍ମ ଓ ଧାମର ।

ମୋ ବଂଶର
ଅଭିଶାପ
ଯଦି ମୋ ଜାତିର ।

ରକ୍ତରେ ମଜ୍ଜାରେ
ଆଉ
ହାଡ଼ମାନଙ୍କରେ;
ମୋ ସ୍ମୃତିର
ଟଳାଟଳ
ସ୍ରୋତ ଇଲ୍‌କାରେ ।

ମୁଁ କଳଇ
ପାପ ଯେତେ
ପିତୃ ପିତାଙ୍କର;
ମୁଁ ଖୋଜଇ
ଅହେତୁକ
ଇତିହାସ
ଯଦି ମୋ ବଂଶର ।

ତଥାପି
ଜୁଆର ଆସେ
ନଈ ମୁହାଣରେ ।
ତଥାପି
ଉଠଇ ଜହ୍ନ
ତାଙ୍କୁ ଦେଖିଲେ ।

ଏ ସବୁର
ହେତୁ କଣ ?
ଏ ସବୁର
ଅର୍ଥ ଅବା
କଣ ?

ମହାତ୍ତ ମୁଁ
କଲ୍ପୁ ଥାଏ
କ୍ଲାନ୍ତ ନୟନରେ,
ଅସଫଳ
ମେଘଙ୍କର
ଝୋମଣ୍ଡା ନାଚରେ ।

କେବେ ମୁଁ ବା
ହୋଇଯାଏ
ହରିତ ପର୍ବତ,
ଅତୃପ୍ତିର
ଶୈଳସାନୁ
ଭେଦ୍ଧ ଐରାବତ ।

ଦାନ୍ତରେ
ବିଦାରିଦିଏ
ଝରଣାମାନଙ୍କୁ
କନକନ
ମାଳ ଆଖି
ନୂପୁରରେ
ରୁଣୁଝୁଣୁ
ପାଦଓ ନାଦକୁ ।

ମୁଁ ହେଉଛି
ଏଣୀଦୃଶା
ବନ ଝାଥ୍ରକାର ।
ମୁଁ ହେଉଛି
ଆନବାଣୀ
ଥରିଲା ଓଠର ।

## ୧୩

ଢୋଲ କରେ କଟମଟ
କଏ ବାକ୍ଷଆସ
ଯୋଡ଼ ମୁକୁଟ ହୋ
ପିନ୍ଧି ବଜ୍‌ଦଆ ପାଟ ।

ମେଘ କରେ
ଗରଜନ
ଯେତେ ଦେଖିଲେ ବ
ଯୋଡ଼ ନୟନ ହୋ
ଥୟ ଧରେ ନାହିଁ ମନ ।

ନଈରେ ବାଳଆ
ଚହଟିଲା
ଦନ ଗଣି ଗଣି
କଜ୍ଜଳ ନାଇ ହୋ
କଏ କାହିଁ ଅବା
ଲେଉଟିଲା ।

କଂସାଖି ଘରର ପାଖ
ପାଳ ଭୂତ ମୁହଁ
ମେଦ୍ଧମ ଗୋଟାଖ
ଖେତ ଜଗେ
ବାନ୍ତ ସାରା ।

ମଦରଙ୍ଗା ଶାଗ ଖାଇ
ଭୁମେ ହୋଇଗଲେ
ଖାଇ ବନୋଦ୍ଧମ
ଲମ୍ବି ଯାଏ
ମୋର ଛାଇ ।

ରତ ରତ ହୁଏ ଜହ୍ନ
ଚକ୍ ଚକ୍ ଗାଲେ
କେତେ ଫଗୁଣ ହୋ
ଦେହ ଯାଏ ବୃନ୍ଦାବନ ।

ଘଡ଼ିକ ଛୁଟେଇ ଘୋଡ଼ା
ଥୁ ରୁ ଥୁ ରୁ ଅଙ୍ଗେ
କାଳସି ଲାଗେ ହୋ
ମୁହଁ ତ କଲେଇ ଛଡ଼ା ।

ପୋଖରୀରେ
ମାଳ କଇଁ
ଦୁଇଟି ମରାଳ
କ୍ରୀଡ଼ା କରୁଥିଲେ
ଚଞ୍ଚୁରେ ଚଞ୍ଚୁକୁ ଥୋଇ ହୋ
ଅଥଳ ଏ ଭେଳାଭୂଇଁ ।

ସୁନାଖି ଫୁଲର ଗନ୍ଧ
ଗୋଟିଏ ଖସିଲେ
ଗୋଟିଏ ଆସେ ହୋ
ଫୁଲର ମୁହାଁସେ
ଜଗତଟା ବନ୍ଧା ଅବା ।

ପାଣିରେ କାଟିଲି ଗାର
ଗୋଟିଏ ମନରେ
କୋଟିଏ ଆକାଶ
ଯଯାତି ମୁଁ
କାତସୁର ହୋ
ହୁଏ ଆଜ ସାତ ପର ।

ବାଡ଼ ଲେଉଟିଆ ଚେକା
ମେଘ ଯୋଡ଼ ହୋଇ

ତାଙ୍କର ସ୍ୱପନ
ଜହ୍ନ ଦେଖେ ଏକା ଏକା ହୋ
ସାଇରେ ପଡ଼ୁଛି ଡକା ।

୧୪

ସେ ସେ ଏକ
ନୀଳାଭ ମୁହୂର୍ତ୍ତ
ଅରଣ୍ୟର
ଝିଅ ପାଙ୍କେ
ସତେ ଅବା
ଏକ ଗଜା ଦାନ୍ତ
ପରି ଜହ୍ନ ;
ଆଖିରେ ମୋ
ଅସଫଳ
ଅତୃପ୍ତ ଫଗୁଣ ।

ଡାକ ପୁଣି
ଲୁଚିଯାଏ
ମେଘ ଆଉଆଳେ
ଝଲକାଏ
ବଜୁଳି କି
ମୁହଁ ଓ ମୁହଁରେ ।

ମୁଁ ଦେଖିଲି
କେହି ନାହିଁ
ନାହିଁ ଦେବଯାନୀ
ଠକ ଠକ
ଓଠ ମୋର
ବିଷଣ୍ଣ ଯାମିନୀ

ପରି କଏ
ଦେଖା ଦେଲ
କର୍ମେଳା ବେଳାରେ
ଅଗସ୍ତି କୁସୁମ ଯେତେ
ତନୁ ଓ ତନୁରେ ।

ନିଷ୍ଫଳ ତା
ଆଖିପତା
ନୂଆ ଚେତନାର,
ଅଙ୍କିତ ସେ
ଶେଷ ପ୍ରଶ୍ନ
କେତେ ଶ୍ରାବଣର ।

ପଚ୍ଛରିଲି
କଏ ତୁମେ ?
ତୁମେ କଏ
ନୂତନ ଭୂମିର ;
ତୁମେ କ
କୁସୁମାକର
ରାଜା ଓ ରାଜ୍ୟର ।

ପାଣ୍ଡି ମୋର
ଖନ୍ନ ବାକେ
ତାହାଙ୍କୁ ଦେଖିଲେ
ମୋ ବଂଶର
ଅଭିଶାପ
ଅଶ୍ୱତ୍ଥ ଡାଳରେ ।

ଲୁଖି ରହେ
କାଳ କାଳ
ଭୃଗୁ ପାଦ ପରି
ଶବ ମୁହଁ

ଶିବ ହୁଏ
ସେହି ପାଦ ସ୍ପର ।

## ୧୫

ଫୁଲ୍ ଆଉ ଫୁଲ୍
ଗୃରଆଡ଼େ
ଲୋଧ୍ରରେଣୁ
ଫୁଲର ସଂସାର ।

ଦେଖି ବଦନ
ପ୍ରଶ୍ନ କଲେ
ଋଷିର ନନ୍ଦନୀ
'ରାଜ ଯୋଗ୍ୟ
କେଉଁ ଫୁଲ୍
ସନ୍ତାପ ହାରିଣୀ ।'

'କେତକୀ ନା ଚମ୍ପା ?
କେଉଁଟି
କେଉଁଟିରେ
ନୂଆବାସ୍ନା
କେଉଁଟିରେ
ଅନନ୍ତ ଅପେକ୍ଷା ।'

କେମନ୍ତେ ବର୍ଣ୍ଣିବ
ହେମନ୍ତର ଫୁଲ୍ ହୋଇ
ଫିକା ଓଠ
ପଣ୍ଡୁ ମାଖି
କେମନ୍ତେ ଗୁନ୍ଥିଁବ ।

ଏଇ ଯଦି ଭବିତବ୍ୟ
ସେବିକା ଦାସୀର

ଚମ୍ପକ ବରଣୀ ରାଣୀ
କାହିଁକ ପଶ୍ଚର ।

ବିଷମ ଏ ସନ୍ଧି
କଣ୍ଠା ଦୁର୍ଗେ
ଭ୍ରମର କି
ହୋଇପାରେ ବନ୍ଦୀ ।

ଫୁଲ୍ ଆଉ ଫୁଲ୍
ଚମ୍ପା ଫୁଲେ
ଖୋଜ ରାଣୀ
ଭ୍ରମର ଉତ୍ତର ।

## ୧୭

ସେ ବି ଥିଲି
ଏକ ପ୍ରହେଳିକା
ରାଜା ରାଜ୍ୟ
ସିଂହାସନ
ରାଣୀର ଭୂମିକା ।

ପୁଚଖେଳ
ସାଙ୍ଗମେଳ
ନବ ବଧୂ ବେଶ
ମିଛୁ ମିଛୁ
ଅଭିନୟ
ଚୁପି ଚୁପି ହସ ।

ହଜିଗଲେ
ଯଳଗର୍ଭା
କେଉଁ ପାତାଳରେ ।

ଅସ୍ତୁନକ
ଆସି କେନେ
ଫୁଲ ସଞ୍ଚବେଳେ ।

ଝଙ୍କୁରେଲ
କହ୍ନବଟି
ସାତ କୁମ୍ଭଗୋଷ୍ଠ
ଦଧିମାଛ
ଶାଙ୍ଗଚଲ
ସାତଘାପ ଜାଳି;

ଯନ୍ଦ କେବେ
ଉଡ଼ିଯାଏ
ପକ୍ଷୀରାଜ ଘୋଡ଼ା
ରଜାଝିଅ
ଗୃହାଣିରେ
ମଲ୍ଲୀର ପାଖୁଡ଼ା ।

ଗହ ଗହ
ମହକଇ
ଗାଁ । ବଲ ଭୂଇଁ
ପ୍ରଶାକ୍ଷାର
ଶେଷ ରାତ୍ତି
ଯନ୍ଦ ଯାଏ ପାହ୍ନ ।

ଯନ୍ଦ କାନ୍ଦେ
ଅହର୍ନିଶ
ରଜାର ଦୁଲଣୀ
ଯନ୍ଦ ମାଗେ
ଗୃତକମ୍ପ
ବୃନ୍ଦମାନ ବାର ।

ତୁମେ ଅବା
ବସି ଥିବ
ଶେଯ ଲେଉଟାଇ
ତୁମେ ଅବା
ଖୋଜୁଥିବ
କବରୀ ଫିଟାଇ ।

ସତ୍ୟଟା କି
ଯଦି ସ୍ୱପ୍ନ
ଯଦି ପ୍ରହେଳିକା;
ତୁମେ ସ୍ୱପ୍ନ
ତୁମେ ନାରୀ
ତୁମେ କସ୍ତୁରିକା ।

ଏତେ ବାର୍ତ୍ତା
ଏତେ ଡାକ
ଏତେ ପୃଥିବୀର;
ମୁହିଁ ସଞ୍ଜେ
ମୁଁ ବି ହେଜେ
ମୁଁ ବି ଖୋଜେ
କାହିଁ ସେହି
ନୀଳଦ୍ୱୀପ
କାହିଁ ସେହି
ନୀଳ ବର୍ଣ୍ଣଧର ।

୧୭

ବଗିଚାରେ
ଅଗଣିତ ଫୁଲ୍ ।

ଯଯାତି ମୁଁ
ମନ ମୋର
ସୂର୍ଯ୍ୟସ୍ନାତ
ଏକ ଦ୍ୱିପ୍ରହର ।

ଗୃହ୍ନୁଁ ଥିଲା
ବାରମ୍ବାର
ପଲାଶ ଫୁଲକୁ
ତା ଆଖିର
ନିଆଁ ଝୁଲ
ଲାଲ ପାଖୁଡ଼ାକୁ ।

ପୁଣି କେନ୍ତବ
କହୁଥିଲା
ଏ ପାଟଳି ଫୁଲ
ଭ୍ରମର
ଗୁମାନ ନେଇ
ରକ୍ତିମ ଅଧର
ହୋଇଯାଏ
ଲାଲେ ଲାଲ
ଅଶୋକ କଳିକା ।
ଫୁଲରେ
ନିଆଁର ବନ୍ୟା,
ନିଆଁରେ ବି
ଫୁଲ ଫୁଟେ,
ଫୁଲ ବି ତ
ନିଆଁର ନାୟିକା ।

ଯେଉଁ ଫୁଲେ
ଅନାଇଲା

ସେଇଠି ତ ନଆଁ
ଫୁଲର
ରଇତ ମୁହଁ ;
ଉଜୁଡ଼ଇ
ଫୁଲବଣ
ଉଜୁଡ଼ଇ
ଫୁଲର ଦୁନଆଁ ।

ତଥାପି ମୁଁ
ଚୁହିଁ ରହେ
ଫୁଲ ମଶାଣିରେ
ଜୁଇ ଦେହେ
ଫୁଲ ଫୁଟେ
ମୋ କଳା ହସରେ ।

ପଗୁରଇ
ସେତେଥର
କହେ ବିଦୂଷକ
'ତମାଳରେ
କୃଷ୍ଣପ୍ରାପ୍ତି
ସୁନାଘାଟରେ
କାୟାମୁକ୍ତି'
ବଦସୁନ୍ତ
ଇତିବାର୍ତ୍ତା
ଶ୍ରୀ ଭଟ୍ଟନାୟକ ।

୧୮

ପୋଖରୀ ଭିତରେ
ଦୁଇଟି କଇଁ

ଧଳା ଫରଫର
ରକ୍ତ ଲୋହିତ
ପାଖୁଡ଼ା ଛୁଇଁ ।

ରଜା ପଗୁରିଲେ
କଇଁରେ କଇଁ
କେଉଁଠି ଉଦାନ
କେଉଁଠି ଅପାନ
କେଉଁଠି ବନ୍ଧାଇ
ଉଜାଣି ନଈ ।

ଧଳା କଇଁ କହେ
ଟିକିଏ ହସି
ଶ୍ରଦ୍ଧାପୂର୍ଣ୍ଣ ବ୍ରତ
କରେ ମୁଁ ନିୟୁତ
ଯହିଁ ମୋ ଶକ୍ତି ।

ଲାଲ କଇଁ କହେ
ଗଗନେ ଗୁହିଁ
ମନ ଲାଲ ହୁଏ
ଯାହାର ପାଇଁ
ସେହି ମୋ ସାଇଁ ।

ପୋଖରୀ ଗୋଟି ତ
ସ୍ନୁର ଚଉକା
ରଜା ବୁଲୁଥିଲେ
ଚଢ଼ି ନଉକା ।

ନଉକା ଭିତରେ
ପଶିଲା ପାଣି
ରଜା ଡାକଦେଲେ
କୁମର ମଣି,

କିଏ କାହିଁ ଅଛ
ଦଉଡ଼ି ଆସ

ଦଦରା ନାଚେ ମୋ
ଆବୋର ବସ ।

ଲୁଲୁଆ କଇଁ ଚ
ଧୋବଲ୍ କଇଁ
ଯେଉଁଟିକି ଧରେ
ସେଇଟି ନାହିଁ ।

ଦେହ ସାରା ମୋର
କଇଁଙ୍କ ଡାକ
ସଞ୍ଜ ବେଳଟାରେ
ପୋଖରୀ ଭିତରେ
କାହିଁ ହଜିଯାଏ
ଜହ୍ନ ମୋ ଦେଖ ।

କଇଁରେ କଇଁ
ଯେଉଁଟି ହେଜଇ
ସେଇଟି ପାଇ
ଯେଉଁଟି ଖୋଜଇ
ସେଇଟି ନାଇଁ !!

## ୧୯

କିଏ ବା ଶୁଣିଛି
ମୋହର ଡାକ
ମନ ହେଲେ ରାତି
ରାତି ହୁଏ ଦିନ
ଜରଦ୍‌ଗବ ନେନେ
ଦୁନିଆଁ ଯାକ ।

ସବୁ ହଳଦିଆ
ସବୁ ତ ଧୂସର
ପାଉଁଶ ବୋଳା
ଝିଲ୍ ମିଲ୍ ନଈ
ତୁଠ ଯାଏ ଖାଇ
ଡୋଳାର ଭିତରେ
ନାଚଇ ଡୋଳା ।

ଚକ୍ଷୁ ବୁଜି ଦେଲେ
ଅନ୍ତରେ ପାଶ
ଥରକୁ ଥର
ତଗ୍ରଠି ଖୋଜିଲେ
ଧରା ଦିଏ ନାହିଁ
ପାଲଟଇ କିବା
ତୁଠ ପଥର ।

କାନ୍ଦି ବସିଲେ
ମୁ ରୁକି ହସଇ
ଦିବସ ରାତି
ଶତ୍ରୁ ଗେରୁ ସେ ଯେ
ଏରୁଣ୍ଡି ଉପରେ
ଗୁରୁଣ୍ଡି ଗୁରୁଣ୍ଡି
ଆସଇ ନିତି ।

କହିଯାଏ କାନେ
ଶୁଣହେ ରାଜନ
ଜଗତ ସ୍ଥିତି
ପ୍ରୀତିରେ କାରତି
କାରତିରେ ପୃଥ୍ୱୀ
କାଟେର ପ୍ରଣତି ।

ତୁମ ବିହ ଖାଲି
ସିନ୍ଦୂର ବୋଳା,
ପୂଜାର ଖଣ୍ଡିଲି
ଗୃହ ପାଖେ ନାଚେ
ଅଷ୍ଟ ସମସ୍ତ
ସତେ ଅବା କେଉଁ
ନାଚୁଆ ପିଲା ।

୨୦

ଦୂରରୁ ଗୃହିଁଲେ
ଦିଶୁଛ ନିକଟ;
ନିକଟକୁ ଗଲେ
ତୁମେ ଅପ୍ରକଟ ।

କୁଆଁ ଖି ମନର
ଅମୁହାଁ ମନ୍ଦିରେ
ବଡ଼ ଅବକାଶ
ଗୃଲଥିଲି ବେଳେ ।

କାଏ ସେ ତାପସ
ଗଇରିକ ବାସ
ଧୂପ ଧାପେ ଜାଳି
ଅଜଣା ଆକାଶ ।

ଆତୋର ରଖିଲି
ଚନ୍ଦ୍ରାଲୋକ ପରି
ଏ ଦେହ ମନ୍ଦିର
ଗୋଟା ଗଲି ଖୋଲି ।

ଅବା ମୁଁ ଚକୋର
ସେ ସୁଧାମୃତ ପାନେ
ମୁଠାଏ ଚନ୍ଦ୍ରିକା
ଧରି ଯୋଡ଼ହାତେ ।

କହିଥିଲ ପ୍ରିୟ
ଯେବେ ଏ ହୃଦୟ
ମୃତ ସଞ୍ଜୀବନୀ
ମନ୍ତ୍ର ସମୁଚ୍ଚୟ ।

ଗାଉ ଅପଯଶ
ନିଷ୍ଠୁର ସମୟ
ଗୋଟିଏ ମନରେ
ଯୋଡ଼ଏ ହୃଦୟ ।

କେମନ୍ତେ ରଖିବ
ଯୁବେ ନିରନ୍ତର
ନିକଟୁ ନିକଟ
ତୁମେ ମୋ ପ୍ରାଣର ।

ଯେତେ ଅନାଇଲେ
ଖାଲି ତୁମେ ଦିଶ
ଘଉଡ଼ାଇ ଦେଲେ
କରି କରି ହସ ।

ତୁମେ ମୋ ଚନ୍ଦ୍ରିକା
ରଜତ ଧବଳ
ଧଳା କଇଁ ମୁଁ ବା
ବେଣ୍ଟ ପୋଖରୀର ।

## ୨୧

ରଥ ଗଡ଼ିଲେ ଘୂଁ ଘୂଁ
ହୋ ଭଗବତେ
ରଥ ଗଡ଼ିଲେ ଘୂଁ ଘୂଁ ।
ଯା'ର ମୁଣ୍ଡ'ର
ସିନ୍ଦୂର ଟୋପା
ତା'ର ଗିରସ୍ତ ମୁଁ ।

କହ ମୋତେ
ବ୍ୟସ୍ତ କଲେ
ରାଜ ଉଦ୍ୟାନରେ
ଶମି ମୁହିଁ
ଶ୍ୟାମା ହେବି
କେଉଁ ଭରସାରେ ।

ରଥ ଗଡ଼ିଲେ ଘୂଁ ଘୂଁ
ହୋ ଭଗବତେ
ରଥ ଗଡ଼ିଲେ ଘୂଁ ଘୂଁ ।
ତନୁ ପାତଳୀର
ଆଖିର ଇଙ୍ଗିତ
ମିଣିପେ ବୁଝିବେ କାହୁଁ ହୋ ।

ବୋଲିଦିନେ
ଡାକ ଦେଲି
ରଥର ଡାହୁକ
କିଏ ଅବା
ବୁଝେ କାହିଁ
ଆଖି ଳେ ଲୋକ ।

ରଥ ଗଡ଼ିଲେ ହଲ ହଲ
ହୋ ଭଗବତେ
ରଥ ଗଡ଼ିଲେ ହଲ ହଲ ।

ମାଇପକୁ ଗ୍ଭଡ଼
ଭଉଣୀ ସ୍ୱପନ
ବାଟବ ଏ ପଶାପାଲି ହୋ ।

କହ କେବେ
ଗ୍ଭଲୁଥିଲି
ସୁଭଦ୍ରାର ରଥ;
ଅକସ୍ମାତ
ଗ୍ଭଜନଗ୍ରେ
ମୁଁ ବା ସ୍ତମ୍ଭୀଭୂତ ।

ଗ୍ଭହୁଁ ଥିଲି
ମହାଶୂନ୍ୟେ
ସାତସିଡ଼ି ଡେଇଁ
ଶୂନ୍ୟତାର ଓଜନ ବି
କଳି ହୁଏ ନାହିଁ ।

ଗ୍ଭରଆଡ଼େ ଗୋଡ଼ବାଣ
ଫୁଲର ପାଖୁଡ଼ା
ଛୁଇଁବାର କମିସ୍ଥାରେ
ଅସୁମାରି ପୀଡ଼ା
ରକ୍ତଭେଣ ହୋଇ କାନ୍ଦେ
ଦୁର୍ଦ୍ଦାନ୍ତ ପବନ
ଦେହେ ମୋର ଲଙ୍କାକୁଳି
ମନ ମୋର ରଙ୍ଗୀ ଫୁଲ ଜହ୍ନ ।

ବାଉଁଶ ଗଛର କଣି
ହୋ ଭଗବତ
ବାଉଁଶ ଗଛର କଣି ।
କାଳୀକୁ ଦେଖିଲି
ଚୋଖିକୁ ଦେଖିଲି

ଶଢ଼େଥର ଗଣି ଗଣି ହୋ
ମନ ଉଠେ ରଣ ରଣି ।

ବୋଲି ରାଜା
ନିଭୃତରେ
କଲେ ଅଶ୍ରୁପାତ
ଅଗ୍ନକ ଲମ୍ବି ଯାଏ
ଯହୁ ଯୋଡ଼ହାତ ।

ଗଛରୁ ଖସିଲା ଡାଳ
ହୋ ଭଗତେ
ଗଛରୁ ଖସିଲା ଡାଳ ।
ସିନ୍ଦୂର ମୁଣ୍ଡୀର
ଆଖିର ଇଙ୍ଗିତ
ଭୁଲି ହୁଏ ନାହିଁ
ବଞ୍ଚିଥିବ ଯେତେ କାଳ ହୋ ।

କହୁ ରାଜା ଝୁରୁଥିଲେ
ଘୁଷୁ ମଣ୍ଡପରେ
ପକ୍ଷୀଟିଏ ଡାକୁଥିଲା
ଆନ ପକ୍ଷୀଟିରେ ।
ଘିଡ଼ ଘିଡ଼ ଘିଡ଼
ରଥଯାଏ ଗଡ଼ ଗଡ଼ ।

ରଥ ହୁଏ ଟଳମଳ
ହୋ ଭଗତେ
ରଥ ହୁଏ ଟଳମଳ ।
ଲଲାଟେ ଯାହାର
ମକର ଶଢ
ଆଖିରେ କଜ୍ଜଳଗାର
ସେଇଟି କନିଆ ମୋର ହୋ ।

କହି ଦିନେ ଏକାନ୍ତରେ
ଗୃହାଁ ଦୂରଦଉଡ଼
ଦେହ ଗୋଟା ଖାଲି ତେଉ
ଖାଲି ନଙ୍କବଳି
ଅଗୁନକ ଝାମ୍ପି ନେଲା
ସମୁଦ୍ର ଲହଡ଼ି ।

ରଥଯାଏ ଗଡ଼ି ଗଡ଼ି
ହୋ ଭଗତେ
ରଥଯାଏ ଗଡ଼ି ଗଡ଼ି ।
ଜଗତଯାକର
ଯେତେ ନକ୍ସିମାଖି
ବୃଦ୍ଧଙ୍କ ଟଗ୍ରସ୍ଥେ
ଧରିଥିଲେ ଆଶାବାଡ଼ି ହୋ
ଜହ୍ନ ମାରଇ ଘଡ଼ି ।

ରଥ ହୁଏ ଥରଥର
ହୋ ଭଗତେ
ରଥ ହୁଏ ଥର ଥର ।

ବାରବର୍ଷ ପରେ
ଯୋଡ଼ି ଆଷାଢ଼ରେ
ଦେଖିଲି ସ୍ୱପନ
ମେଘେ ମାରେ
ପଞ୍ଚ ଶର ହୋ ।

ଘିଡ଼ି ଘିଡ଼ି ଘିଡ଼ି
ରଥଯାଏ ଯନ୍ତ୍ର ଗଡ଼ି ।
ଦେହ ସାଗ୍ର ମୋର
ବୟସ ଖୋଳପା
ସମୟର ସୁନାଚୂଡ଼ି ହୋ ।

ଯେଉଁ ରଥେ ବସି
ଯଯାତି ଗଲେହେଁ ମୁଁ
ବୁଆଡିଶୀ ଜାଲେ
ଗୁଛା ହୋଇ ଝୁଲେ
ମଣିଷ ଜାତର ପୀଡ଼ା ହୋ ।

ଘିଡ଼ ଘିଡ଼ ଘିଡ଼
କାହିଁ କେଉଁ ରଥ ?
କେଉଁ ଆଡ଼େ ଅବା
ଡାହୁକ ଗୁଡ଼ଇ ରଡ଼ ହୋ
ରଥ ମୋର ଯାଏ ଗଡ଼ ।

୨୨

ମେଘାଚ୍ଛନ୍ନ
ଏକ ଜହ୍ନ ରାତେ
ମହାରାଜା
ବୟସ୍ୟଙ୍କୁ
ହକାରି ଏକାନ୍ତେ ।

ପଚାରିଲେ
କହିବ କି
ହେ ପ୍ରିୟ ବୟସ୍ୟ
ଧଳା କଇଁ
ନୀଳ ହୁଏ
ରଙ୍ଗା କଇଁ
ନୀଳ ହୁଏ
ଏ କେଉଁ ରହସ୍ୟ ।

ମଣିମା,
ଶୁଣିମା ହେଉ

ଆମର ବାଣୀ
କଇଁ ବନେ
ଭ୍ରମୁଁ ଘନେ
ନାରଦ ମୁନି;

ଦେଖିଲେ
ଗୋଟିଏ ହଂସ
ଖେଳେ ନିପୁତ,
ଅଦୂଠିରେ
ଦୁଇ କଇଁ
ମେଲ ଲୋହିତ ।

ଧଳା କଇଁ
ଲଜେଇଲା
ଜହ୍ନକୁ ଚୁହିଁ
ଓଠ ତଳେ
ଧାରେ ହସ
ଫଗୁଣ ନଈ ।

ଚୁରିଆଡ଼େ
ଶୂନଶାନ
ସରସୀ ଜଳ,
ଅତୃପ୍ତିର
ମେଲ ଗର୍ଭେ
ଏକ ମରାଳ ।

ପଶୁରିଲା
ମେଲ କଇଁ
ଫୁଟ କାହିଁକି ?
ଫେଣେଇ
ଉଠଇ ଜହ୍ନ
ତୁମ ପାଇଁକି ?

ରତା କରିଁ
ଦର ହସି
ରହିଲ ଗୃହିଁ
ରଣ ଭଣ
ହୋଇ ଛୁଟେ
ଶ୍ରାବଣୀ ନଈ ।

ଏହା ଦେଖି
ହସି ଦେଲେ
ନାରଦ ମୁନି
କରିଁ ବନେ
ସେଇ କାଳୁ
ପଡ଼େ ଭାଲେଣି ।

ତଥାପି ସେ
ହଂସ ଖେଳେ
ଅଗାଧ ଜଳେ;
ଏ ମହା
ନିଗମ ବାଣୀ
ମର୍ତ୍ତ୍ୟ ମଣ୍ଡଳେ ।

୨୩

ସାରଥିରେ
ଚଳା ଧୀରେ
ମୋହର ସ୍ୟନ୍ଦନ
ଠକ୍ ଠକ୍
ଘୋଡ଼ା ଟାପୁ
ଦେହରେ ଦରଜ ମୋର
କ୍ଳାନ୍ତ ଚକ୍ଷେ

ବାଲିକୁଦ
ଅସ୍ତଯାଏ ଜହ୍ନ ।

ଖୋଜୁଥାଏ
ଚଟି ଘର
ମୀନ ଶୈଶବର
କୈଶୋରର
ପ୍ରଜାପତି
ଫୁଲଙ୍କ ସହର ।

କିଏ ସେ
ଓଳାଇ ଦିଅ
ଫୁଲ ଗୁଞ୍ଜୁଣିରେ
ଯୌବନର
ଉଆସରେ
ଦ୍ୱିତୀୟ ପ୍ରହରେ ।

ମୁଁ ବି ଏକ
ଗୁଣ୍ଡ କାଣ୍ଡ
ସୁଠାମ ପୁରୁଷ
ମୁଁ ବି ପିନ୍ଧେ
ମଖମଲ ସାଜ
ଏବଂ
ମୁଁ ବି ଜାଣେ
ଷୋଳକଳା
ଚନ୍ଦ୍ର ଚଳା
ଚଉଷଠି ରସ ।

ତୁମେ କଣ
ନାଷ୍ଟି
ସେହି ରଜନୀର,
ତୁମେ କଣ

କ୍ଷୁଧା
ଆଦ୍ୟ ମଣିଷର ।

ମୋ ହାବଭରେ
ଲଖି ରହ
ଦକ୍ଷ ମୁଣ୍ଡ ପର
ଦେହେ ମୁଁ
ପାଉଁଶ ବୋଳେ
ଶ୍ମଶାନ ସ୍ୱର ।

ଆସ ଯେତେ
ନଗ୍ନଜନ
ବିଭାଣ୍ଡକ ସୁତ
ଭଗ୍ନଜାନୁ
ମୁଁ ବି ଆଜ
କାନ୍ଦକାନ୍ଦ,
ହାତରେ
ଜଖମ ମୋର
କମୁ ନାହିଁ
ଏକାନ୍ତ ବିବ୍ରତ !

ମୋ ରଥର
ଘୃର ପାଖେ
ଖାଲି ଗୁଞ୍ଜରଣ
'ଅଦୃଶ୍ୟ ନଗଣ୍ୟ
ହୋଇ
ନିକଟୁ ନିକଟ'
ଜାମାରେ ମୋ
ପିଚକାରି
'ଠେହ ଠେହ
ହସେ ଫାଟେ
ସକଳ ଭୁବନ ।

୨୪

ସମସ୍ତ ଭଉଁର ମାର
ପରିକ୍ରମା କରେ
ମୁଁ କାକୁସ୍ଥ ମଣିଷଟି
ହରି କାଠେ
ଝୁଲିବା ଉପରେ ।

ତୁମେ ଯେତେ
ନଗ୍ନ ଜନ
ଶୁହଁ କାହିଁକି ?
ଲହ ଲହ
ଅଗ୍ନି ଶିଖା
ଶୁଟିଯାଏ
ଦେଖ ନାହିଁକି ?

ମାର୍ଜାର
ଖବଇ ଯଦି
ଦକ୍ଷିଣ ମୂରତି;
ଶ୍ୱାନ ଶିବା
କୋଳାହଳେ
ପୂରେ ଯଦି ପୃଥ୍ୱୀ ।

ଲଞ୍ଜା ତାରା
ଉଏଁ ଯଦି
ଗଗନ ମଣ୍ଡଳେ
ଧୂମାଭ କୁହୁଡ଼ି ଯଦି
ଚନ୍ଦ୍ର ଗ୍ରାସ କରେ ।

ଆୟୁ କ୍ଷୟ
ଧନ ନାଶ
ଜନ୍ମା ଅପଯଶ

ଅକାଳ
ବାର୍ଦ୍ଧକ୍ୟ କମ୍ପା
ମୁନ୍ନ ଜନ ରୋଷ ।

ଲେଖା ଯଦି
ଭାଗ୍ୟ ମୋର
ସପ୍ତ ପୁରୁଷର,
ନାରୀ ଯଦି
ଲୀଳା ସଖୀ
ଅଦ୍ୱୈତ ଚତ୍ୱର ।

ତୁମେ କାମ୍ୟା
ବୁଝ ନାହିଁ
ଅୟି ରାଜରାଣି,
ସବୁଠି ତ
ତୁମ ରାଜ୍ୟ
ତୁମ ରାଜଧାନୀ ।

ତୁମେ ଯଦି
ଶିବାସନ,
ମୁହିଁ ତୁମ ଶିବ;
ହେ କାଳିକା
କାତ୍ୟାୟିନୀ
ଏକ ସାଜେ
ଦୁଇ ପଣ
ନୁହେଁ କି ସମ୍ଭବ ?

୨୪

ସ୍ୱଚ୍ଛ ଏ
ଧମଣିରେ

କିବା ପ୍ରୟୋଜନ,
ସମସ୍ତେ
କରନ୍ତୁ ଓଷା
ଦୁଷ୍ଟଗ୍ରହ ବାହନ ।

ଧନ ଧାନ୍ୟେ
ପୂରି ଉଠେ
ମୋ କୋଠ ଭଣ୍ଡାର
ଏ କୋଠାରେ
ନୂଆ ଶବ୍ଦ
ନୂଆ ଡାକ
କେଉଁ ଶତାବ୍ଦୀର ?

ତୁମେ କିଏ ?
ଧାତ୍ରୀ !
ତୁମେ କିଏ
ହେ ଧରିତ୍ରୀ
ସକଳ ଭୂମାର
ଗାଅ ବାରମ୍ବାର
'ଆହା ମୋ ନନ୍ଦ
କୋଳେ ଗୋବିନ୍ଦ ।'

ବଚନ ଏ
ସ୍ୱଗିଣୀରେ
ଆକାଶରେ
ଉଏଁ ଯଦି
ଆଉ ଏକ ଗୃନ୍ଦ ।

ହେଉଥିବ ଧ୍ୱନି
ବିନାଶନ
ଆତ୍ମା ଓ ମନର,

ମୋ ବଂଶରେ
ଆସେ ଯଦି
ଚତୁର୍ଥ ପ୍ରହର ।

ସବୁ ଏବେ
ଦୂର ହେବ
ଚକ୍ଷୁ ପଲକରେ,
ଦକ୍ଷିଣ ବାହୁ ମୋ
ଷ୍ଫୁରେ
ଜହ୍ନକୁ ଦେଖିଲେ ।

ଆସ ସେତେ
ଜହ୍ନମାନେ
ମୋ କୋଳକୁ ଆସ
ଏ ଧୂମାଭ
ଆକାଶରେ
ଗହ ଗହ ହସ ।

ମୁଁ ବି ଆଜ
ଜ୍ୟୋତ୍ସ୍ନାସ୍ନାତ
ତୁମ ପରଶରେ
ଭୁଲିବା
ଦରଜ ମୋର
ବୁଲିବାର
କ୍ଲାନ୍ତମୋର
ମେଣ୍ଟି ଯାଏ
ତୁମକୁ ଦେଖିଲେ ।

ଗାର୍ଗ ମୁନି
କହିଥିଲେ
ପିତାର

ସୁକୃତ ଯେତେ
ଅବତାର ନେଲେ
ପୁଣି ଏ
ଜନ୍ମ ହୁଏ
ଏ ମହୀ ମଣ୍ଡଳେ ।

ଯଯାତି ବି
ଜନ୍ମ ନିଏ
ଭୁମର ରୂପରେ
'ଆସ ଶିଶୁ
ଆସ ଆତ୍ମା
ଆସ ମୋର କୋଳେ ।'

୨୭

ମେଷ ବାହନରେ
ଅଗ୍ନିଦେବ
ସବାର ହୋଇଲେ
ହଠାତ୍ ଜଳଇ ନିଆଁ
ବନ ପାହାଡ଼ରେ ।

' ଭୁଲଆଡ଼େ
ଯୋଗେ ନିଆଁ
ବନ ଗୋଟା
ନିଆଁ ଆଉ ନିଆଁ
ପଡ଼ଯାଏ ହୁରି
ଏଇ ଡାକ ଶୁଣି ଦିନେ
ଶ୍ରୀ ମୁରଲୀଧାରୀ ।

ଅଞ୍ଜନକ ଗିଳି ଦେଲେ
ନିଆଁ ଓ ଧୂଆଁକୁ

ଚଉଦ ଭୁବନେ ଯଶ
କୀର୍ତ୍ତି ରଖିବାକୁ ।

ନାଆଁକୁ ଉନ୍ନତ କାଆଁ
ମନୁସୁତ ଗଣ
ନାଆଁରେ ଗୃଳିବା ଆସ
ନାଆଁରେ ଧେୟାଇ ପଣ
ନାଆଁ ଯଜ୍ଞ କରେ ନିମନ୍ତ୍ରଣ ।

ଏ ନାଆଁ ବି
ଆଦ୍ୟ ସାକ୍ଷୀ
ତୁମର ଓ ମୋର
ନିଆଁ ହିଁ ତ
ମୂଳ ମନ୍ତ୍ର
ଜଗତ ଜନର ।

ଶୁଣ ଆହେ ଦେବଯାନ
ଅଗ୍ନି ଗର୍ଭା ନାରୀ
ବ୍ରହ୍ମ ଅଗ୍ନି ଋଷି ଅଗ୍ନି
ପାରେ ମୁହିଁ କଳା ।

ହୁଏତ ମୁଁ ଜଳାଯିବ
ଯଜ୍ଞ ଧାତ୍ରିକାଠର
ବହ୍ନିମାନ ମେଘୁ ବି ତ
ବର୍ଷା ଝର ପାରେ ।

ଅଗ୍ନିମନ୍ତ୍ରେ ଦୀକ୍ଷା ଦେଲ
ଯଜ୍ଞ ଟୋ ଭବାନୀ
ସଂହର କାଳିକାମୂର୍ତ୍ତି
ହୁଅ ଷଠୀ ରାଣୀ ।

'ତୁମେ ସୃଷ୍ଟି
ତୁମେ ଦୃଷ୍ଟି

ତୁମେ ମନୋରମା
ତୁମେ ଲୀଳା
ତୁମେ ଧରା
ମୂର୍ତ୍ତିମନ୍ତ କ୍ଷମା ।'

ଏଥି ନିମନ୍ତେ
ଟିକେ ସ୍ଥାନ
ଦେଇ ଉଆସରେ
ସଂକଟ ହାରିଣୀ ବାମା
ଏଇ ଦସ୍ୟୁ ତରେ ।

୨୨

ନର ଆଉ ନାରୀ
ହୁଏ ନାହିଁ ବାରି
ସାତତାଳ ଜଳେ ଖେଳେ
ଅଜସ୍ର ଉର୍ମିଶି ।
ଆବର୍ତ୍ତିତ
ଇନ୍ଦ୍ରଧନୁ
ଅବା ହେମନ୍ତ ନାରୀ ।

ଶୋଭାଇ
ଗୁହାଁଲେ ଦେଶେ
ଏକ ରମ୍ୟତରୀ
ବନାଇ
ଭାସିଲେ ଜଳେ
ବହ୍ନି ଶିଖା ପରି ।

ଭାବେ ମୁହିଁ
କି କରିବି
କେଣେ ଯିବି

ଅଗାଧ ଏ ଜଳ
ଗୃହଆଡ଼
ଗୃପା ହସ
ଶଙ୍ଖଙ୍କର ଖେଳ ।

ଯଯାତି ହୁଡ଼ିଲା ପଥ
ଯଯାତି ବାହିଲା ରଥ
ବନ୍ଧୁର ଭୂମିରେ
ନଷ୍ଟାଳ ସେ
ଆକାଶରେ
ପ୍ରଭଞ୍ଜନ ମେଳ
ଏକାନ୍ତ ପ୍ରବଳ ।

କାହିଁ ସେହି ନାରୀ
କାହିଁ ସେହି ଦସୀ
ସଚନ ଏ ଜହ୍ନରାତି
ଚନି ତ ଅନ୍ଧାରେ ଧତଶ
ନୀଳମୃଗ ପରି ।

ହୁଏତ କହିବ ମୋତେ
ସବୁ ହେଲା ଶେଷ
ପୃଥ୍ୱୀର ଭୂମିକା ଓ
କୁଷିନାସ୍ତ ବେଶ ।

ଏତେ ଶୀଘ୍ର
ବିସୋରିଲ
ଏ ମାଟିର ରସ
ଏତେ ଶୀଘ୍ର
ହୋଇଗଲ
ଅଚହ୍ନା ଆକାଶ ।

କ'ଣ ବା
ଉତ୍ତର ଦେବ
ମୁହଁ ସଞ୍ଜବେଳେ

ଝରୁଆ
ଚାରିଟି ହୃଦୟ
ଗଗନ ମଣ୍ଡଳ ।

ମୁଁ ଦେଖିଲି
ସ୍ୱପ୍ନ ଯେତେ
ମନ୍ଦାର ଅଧର
ରକ୍ତ ଜିହ୍ୱା
କାଳିକାର
ଚରଣ କଠୋର
ପରି ମୁହିଁ
ଗଢ଼ୁଥିଲି
ରାଜ ଦରବାରରେ
ନିଷ୍ଠୁର କଇଁଚଙ୍କର
ମୁଦ୍ରିତ ଆଖିରେ ।

ଯଦ୍ୱବ ଉତ୍ତର ଦେଲେ
ସବୁ ରାଜନ୍ଦନ
ଯଯାତି ମୁଁ
ମାଗୁଥିଲି
ଅଙ୍ଗବାସ
ଏକମାତ୍ର ବସ୍ତ୍ର ।

୨୮

ଅସୁମାରୀ
ନୀଳ ରଙ୍ଗ
କୁସୁମ ଗଛରେ
କାଏ ଅବା

ବୋଲି ଦେଲ
ମୁହଁରେ ମୁହଁରେ ।

ବସନ୍ତର
ଏକପାଦ ମେଘ
ରାତେ ରାତ
ହୋଇଗଲେ
ଏକ ବୁଢ଼ାବାଘ ।

କହୁଥାଏ
ନଅ ଆରେ
ସୁବର୍ଣ୍ଣ କଙ୍କଣି;
ନିତ୍ୟକରେ
ଗଙ୍ଗା ସ୍ନାନ
ଅଭ୍ୟାସେ ମୁଁ
ଦାନ ଧର୍ମ
କରି ଯାଉ
ସକଳ ଦୂଷଣ ।

ବାଘ ତ
ମଣିଷ ଖାଏ
ମଣିଷ ତ
ବାଘ ପ୍ରାୟେ
କରେ ଆଚରଣ ।

ଶୁଚି ସ୍ନାନ
ଦେହ ଗୋଟା
ଚିତା କାଠି
ଲେଖି ଦିଏ
ନାରାୟଣ
ଖାଲି ନାରାୟଣ ।

ସବୁଠି ତ
ପଡୁଥାଉ
ମଣିଷ ଜାତର,
ସବୁଠି ତ
ବାଘ କଥା
ତୁମରି ଓ ମୋର ।

ମନେ ପଡ଼େ
ଅସ୍ତ ଗଲେ
ଦେବ ବିକର୍ତ୍ତନ
ବାଘ ମୁଖା
ପିନ୍ଧି ନାଚେ
ଚଉଦ ଭୁବନ ।

ବାଘମାନେ
ନାଚୁଛନ୍ତି
ସର୍କସ ଦଳରେ
ବାଘ ଯେତେ
ମାତିଛନ୍ତି
ବନ ପାହାଡରେ ।

ହାଉଁ ହାଉଁ
ଶବ୍ଦ ଶୁଭେ
ନିର୍ଜନ ରାତିରେ,
ଯଯାତି ମୁଁ
ନିରେଖିଲି
ଭିତ୍ତି ଦର୍ପଣରେ ।

ମୁଁ ବି ଏକ
ହତବୀର୍ଯ୍ୟ
ମହାବଳ ବାଘ

ବାରୁଣୀ
ସ୍ନାହାନେ ନନ୍ତ
ମାଗୁଥାଏ
କାମ୍ୟ କଳ୍ପ
ଅବଧୂଷ୍ଟ ଯୋଗ ।

## ୧୯

ଝଡ଼ ଏ ଯେ ଝଡ଼
ଝଲିଯାଏ
ଗଛ ବୃକ୍ଷ
ବନ ଓ ପାହାଡ଼
ସୁଖର ପହୁଡ଼ ଯେତେ
ପକ୍ଷୀଙ୍କର ନୀଡ଼ ।

ମହାରାଜ
ଶୁଣୁଁ ଥିଲେ
ହୃଦ ଦର୍ପଣରେ
ଅଶୋକ ବନିକା ଅବା
ରାଣୀ ହଂସପୁରେ ।

ଝଡ଼ କେବେ
ଉଚ୍ଚାରିବ
ମନ୍ତ୍ର ଅଶେଷ
ଝଡ଼ କେବେ
ହାତ ଧରି
ଆରମ୍ଭିବ ନାଚ

କହୁଥାଏ
ମହାରାଜ
ଭୁଲିଗଲ

ମନ୍ତ୍ର ଉଚ୍ଚାରଣ
ବନ୍ଦମାରିଲ
ଋଷି ବାକ୍ୟ
ମଙ୍ଗଳ ବିଧାନ ।

'ଯଦି କେବେ
ବିଶ୍ରମିବ
ଅନ୍ୟ ପର୍ଯ୍ୟଙ୍କରେ
ଯଦି କେବେ
ନିଦ ଯିବ
ଅନ୍ୟର ଅଙ୍କରେ

ହୋଇପାରେ
ତନୁକ୍ଷୟ
ଅବା ବୁଦ୍ଧି ଭ୍ରଂଶ
ଘଟିପାରେ
ଅଗ୍ନିଙ୍କ
ଦେହେ କରଗ୍ରାସ ।'

ହବୁ ମୂର୍ତ୍ତି
ଶୁଣୁଥିଲି
ବେତସ ବନରେ
ଝଙ୍କାର
ତାଣ୍ଡବ ନୃତ୍ୟ
କମ୍ପିତ କଣ୍ଠରେ ।

କହୁଥିଲି
କରକ୍ଷମା
ହେ କ୍ଷୀଣ ମଧ୍ୟମା
କ୍ଷମା ଧର୍ମୀ
କ୍ଷେତ୍ରପାଳେ
କର ବାରେ କ୍ଷମା ।

ତଥାପି ମେ
ଶୁଣେ ନାହିଁ
ଘଣ୍ଟି ଦେଇ
ଯେତେ ଲୁହାବାଡ଼ି
ମନେ ଭରି
ଗଳିଛି ମେ
ଅଭିମାନ
ପାହାଡ଼ ପାହାଡ଼ ।

କି ମନ୍ତ୍ର ମୁଁ
ଉଚ୍ଚାରିବି
ଯାବି ପାରେ ନାହିଁ,
ଝଡ଼ ଡାକେ
ନାଚୁଥାଏ
ତାର ବାଟ ଗୃହିଁ ।

୬୦

ସ୍ତବ୍ଧ ନେତ୍ରେ
ଫେଡ଼ ଦେଖ
ଭୂମ ଯୋଡ଼ ନେବ
ଅକାଳରେ
ହୋଇ ପାରେ
କରକା ସପାତ ।

'ପୂର୍ବ ଆର୍ଦ୍ଦୋଳ
ପଶ୍ଚିମେ ରୋଇ
ଡାକ ବୋଲେ ପୃତା
ନଷ୍ଟେ ବର୍ଷଇ ।'

ପଡିଥିଲା
ପୋଥି ଘରେ
ଅବା ଗୃହାଳରେ
କହୁଥିଲି
ସାଥି ମେଳେ
କଳା ମେଘଟିରେ ।

'ନ ବରଷେ
କଳାମେଘ
ବରଷେ ଧୂଳିଆ
ନ ପୋଷଇ
ଝୋବପୁଅ
ପୋଷଇ କାଳିଆ' ।

ଆଜି କାହିଁ
ମନେ ପଡେ
ମେଘାଳ ମୁହୂର୍ତ୍ତେ
ଦେବଯାନୀ
ଘୋଡା ଟାପୁ
ଘର୍ଷିତ ରଥେ ।

ଯଦୁ ଆଦି
ବଂଶୁ ଥିଲେ
ଇନ୍ଦ୍ର ଗୃହ ପ୍ରାନ୍ତେ
ଧୂଳିଆ
ଧୂସର ପୁରୁ
ଅଗ୍ରଜନକ
ହୋଇଗଲା
ମୋ ଆଖିର
ଚଢା ମେଘଟିଏ ।

ହୁଏତ ସେ
ଶେଷ କରି
ହିମାମୋମା
ଏଇ ପୃଥିବୀର
ହୁଏତ ସେ
ଶେଷ ରହି
ଅନନ୍ତାରମ୍ଭର ।

ନିଃସ୍ୱ ମୁହିଁ
ଡାକୁଥିଲି
ଆହେ ଦେବ ଦେବ
କାଳାତୀର୍ଣ୍ଣ
ମୃଗତୃଷ୍ଣା
କଣ୍ଠେ ମୋର
ମୃତନଦୀ
ହେ ନୀଳ ଅର୍ଣ୍ଣବ ।

୩୧

ଟିକ୍ ଟିକ୍ ଖରା
ନଈ ଦେହେ
ଝିଲ୍ ମିଲ୍
ବିଚିତ୍ର ରେଖାରେ ।

ମୁଁ ଦେଖୁଛି
ମୁହଁ ମୋର
ଏକାନ୍ତ ବିହଙ୍ଗ
ସୋରିଷ ଫୁଲିଆ ଦେହେ
ଜବା ଫୁଲ ରଙ୍ଗ ।

ହଠାତ୍ କାଏ
ବୋଲି ଦେଲ୍
ନଈ ମୁହାଣରେ
ଲମ୍ବା ଲମ୍ବା
ଗୁଇଙ୍କର
ଦୈର୍ଘ୍ୟ କେତେ
କଳୁଥିଲ୍ ବେଳେ ।

ନଈ ପଠା
କଆଁ କାହ
କାହିଁ ବା ଉତ୍ତର
ମିଳିବାକ
ଲଡ଼ଉଙ୍କର
ନଦୂଆ ଆଖିର;
ମୁଣ୍ଡ ପେଲେ
ବ୍ୟାପିଯାଏ
ନଈ ଗୋଠା ସାରା
କାତି ଛଡ଼ା ସାପ ପରି
ରକ୍ତର ଦୁ ଖରା ।

ଫଣା ଟେକି
ଅବା କହେ
ଶୁଣ ଆରେ ଶୁଣ
ସାପ ଖେଳେ
ମତ୍ତ ସବେ
ସକଳ ଭୁବନ ।

ନଈ ଯଦି
ଖୋଜିବୁଲେ
ବଣ ପାହାଡକୁ

ପାହାଡ଼ର
ମାଳ ଗୁଇ
ଗାଆଁରୁ ଗାଆଁକୁ ।

ଛୁଇଁ ଦେଇ
କହୁଥାଏ—
'ରଜା ଝିଅ
ନେହାଇ ପାଟରେ
ଗେଲ ବୟସର
ଋଷି ଝିଅ
କହିଥିଲ
ପାଲଣା କାକର' ।

ଦୂବକୁ କାକର
ସହଇ ନାଇଁ
ତପ କରେ ଋଷି
ଝିଅର ପାଇଁ ।

୩୨

ଧୂମିଳ ଆକାଶ;
ସୂନୃତରେ
ଅନୃତର
କ୍ୱଚିତ୍ ପ୍ରକାଶ ।

ଦେଖୁଥିଲେ
ଶୁକ୍ରାଚାର୍ଯ୍ୟ
ମେଧାଭ ଆଖିରେ
ଦେବଯାନୀ
ମୁଖଚ୍ଛବି
କନକ ଦର୍ପଣରେ ।

ଝଲମଲ
ହେଉଥିଲା
ନମ୍ରତାର ଗାର ।
ଗୃହାଣିରେ
ଏକା ଗମନ୍ତ
ଦୂର ଗ୍ରାମ
କଅଁଳ ପତର ।

ଫୁଟୁଥିଲା
କେତେ ଫୁଲ
ଦଗ ଉହାଡ଼ରେ
ଆକାଶେ
ବଳାକା ଦ୍ୱୟ
କୁଲ୍ୟ ରଚିଲେ ।

କହୁଥିଲେ
କେତେ ଦୂରର
ଯାନୀ ଓ ଯଯାତି
ମୋ ଆଖିର
ରମ୍ୟ କଳା
ମେଘମୟ ସ୍ମୃତି ।

ମୁଁ ବୋହୁଛି
ପାପ ଭାର
ଦାନବୀ ଶକ୍ତିର
ହରାଇଛି
ମୃତ୍ୟୁରୋଧୀ
ସଂଜୀବନୀ ସ୍ୱର ।

ତେବେ ବି
ଫୁଲର ସ୍ମୃତି
ଯାହାକୁ ଦେଖିଲେ

ହେ ସୀମାନ୍ତ
ଦେବଯାନୀ
ଉଭୟରେ ମୂଳରେ ।

**୩୩**

କରରେ ଶିଥିଳ ବଲ୍‌ଗା
ଘୋଡ଼ାମାନଙ୍କର
ଖୁରରେ ସ୍ପନ୍ଦନ ମୋର
ନେଣାଗାଠ ନଈଘାଟ
ବଣ ପାହାଡ଼ର
ବହୁଦୂର ରହିଲାଣି
ଦଇତ୍ୟ ନଗର ।

ଉଭାଗାଳ ଘୋଡାଶାଳ
ହେନ୍ତାଳ ନୂଆର
ଚେଉଆଳ ଘରଣୀ ମୁଁ
ଅନନ୍ତ କାଳର ।

ମୋ ଆଖିର
ସ୍ୱପ୍ନଙ୍କର
ହେମମୟ ଘର ।
ସବୁ ଯନ୍ତ୍ର ଚୂରମାର
ଅକ୍ଷୟ ଅମର;
ମୁଁ ଉଦ୍‌ବେଳ
ମୁଁ ଉଚ୍ଛଳ
ମୁଁ ବି ଏକା
ବିକ୍ଷୁବ୍ଧ ସାଗର ।

ଝଡ଼େ ଆଣେ
ପକ୍ଷୀଙ୍କର

ମୁଗ୍ଧ ସମାବେଶ
ମନସ୍ୱଜା ମାଡ଼ସନ୍ଧା
ଅବା କେଉଁ
ଖଣ୍ଡି ଉଡ଼ା ଶାବକର
ଡେଣା ସାରା ହସ ।

ଦେଖୁଥିଲି
ପକ୍ଷୀଟିଏ
ନଶ୍ଚଳ ବେଳରେ
ହଠାତ୍ ଚକ୍ର ମାରି
ଅତି ସରାଗରେ
ଚଞ୍ଚୁଟିକ ଥୋଉଥାଏ
ପକ୍ଷିଣୀ ଚଞ୍ଚୁରେ

ଝିଲ ମିଲ ହେଉଥାଏ
ଖରା ସୁନା ପିଲ୍
ନଈରେ
ଗାଧୋଇ ପଡ଼ି
ଫୁଲ ବଣେ
ଗୀତ ଗାଏ
ସଞ୍ଜ ଗୋଟା ସାରା ।

ଚକ୍ ମିକ୍
କେଉଁ ଉଆସରେ
ଆକାଶର
ଦର ବୁଜା
ହସିଲା ଓଠରେ ।

କିଏ ଆସି
କହିଯାଏ
'ଶମୀ ଓ ଯଯାତି'
ମୁଁ ବି ହୁଏ
ଅଗ୍ନି ଶର୍ମା

ଦେବେ ମୋର
ବନ୍ଧୁର ସଂହାର ।

ପିତା ମୋର
ରତ ଥିଲେ
ରୁଦ୍ର ଶାନ୍ତ
ଜଳ ଶୟାନରେ;
ଅଲିଅଳୀ
ଝିଅ ମୁହିଁ
କର୍ଷିତ କଣ୍ଠରେ ।

ପଶୁରର
ଏକ ହେଲା
କିବା ଏ ଚରିତ
ମହାରାଜା
ଲଙ୍ଘିଗଲେ
ଗୃହଧର୍ମ
ନିଷିଦ୍ଧ ସଙ୍କେତ ।

ମୁଁ କାନ୍ଦଇ
ଅହର୍ନିଶ
ରାଜ ସଦନରେ,
ଅଭାଗିନୀ
କନ୍ୟାସ୍ତମ୍ଭ
ପରାସ୍ତେ ରଥରେ ।

ବସି ମୁହିଁ
ଆସୁଥାଏ
ପିତୃ ନନ୍ଦନକୁ
ଗୃହସ୍ଥ
ହୁଡଇ ଧର୍ମ
ଚେତାଇ ଦେବାକୁ ।

କହ ରାଣୀ
ଲୋଟୁ ଥିଲେ
ପିତାଙ୍କ ପଯ୍ଟରେ
ଉଶନା
ଅନାଉଥିଲେ
ନବୀନ ଦୃଷ୍ଟିରେ ।

## ୩୪

ରଙ୍ଗୀନଚୁ
ଗୁଳଥାଏ
ଶରଦ ଉତ୍ସବ
ବଉଦେ
ମଣ୍ଡଳ ନୃତ୍ୟ
ହ୍ରୀ ଓ ଶ୍ରୀର ।

ପଗ୍ଭରଲେ
ଏକାନ୍ତରେ
ମୁଗଧା ଦେବଯାନୀ
ଠୁକୁ ଠୁକୁ
ଲାଲ ଓଠେ
ସତେ ବା ରୋଷଣି ।

କହିବ କି
ପ୍ରିୟତମ
ଅଚହ୍ନା ମେଘରେ
କାହିଁକି
ବିଜୁଳି ନାଚେ
କେଉଁ ସରାଗରେ ?

ମୁଁ କହିଲି
ଦେଖ ପ୍ରିୟେ
ଏ ଲୁବ୍ଧ ଓଠକୁ
ବନ୍ଧୁଲି
ଚହ୍ଲାଇ ଦିଏ
ଅଚହ୍ଲା ଏ
ଭ୍ରମର ମୁହଁକୁ ।

କହୁ କହୁ
ଅଚାନକ
ମେଞ୍ଚାଏ ବିଜୁଳି
ହୋଇଗଲ୍
ସତେ ଅବା
ଦୁଇ ଗଣ୍ଡ ପାଳି ।

ମୁଗ୍ଧ ମୁହିଁ
ଗୃହୁଁ ଥିଲି
ମୁହଁରୁ ମୁହଁକୁ ;
ସେବିକା
କହିଲ୍ ଆସି
ହେ ମଣିମା
ବେଳଗଡ଼ି
ବିଜେ ହେଉ
ମଣୋହି ଠାଆକୁ ।

ସବୁ ଆଜି
ସ୍ୱପ୍ନ ଲାଗେ
ସବୁ ମାୟାମୃଗ
ଯାଆଯାଏ
ବାପଘର
ଗୁଡ଼ ସବୁ

ଭୁବସୁ ଓ
କାନ୍ତର ନିୟୋଗ ।

ବଚନ
ବଧୀର ଏବେ
ଦୂନେଜ ମୂର୍ଦ୍ଧାଁ
ଦକ୍ଷିଣ ନାୟକ
ଯେଉଁ ଫୁଲେ
ଅନାଇଲେ
କ୍ଷଣ ଥାଏ
ସେହି ଫୁଲ ଭାବ ।

ତଥାପି
ଚମ୍ପକ ସ୍ତୁତି
ଜାଳିଦିଏ
ନାଭିରନ୍ଧ୍ର
ଦେହ ମନଯାକ ।

ମୁଁ ଖୋଜଇ
ଦିନ ରାତି
କାହିଁ ସେହି
ହେମ ପୁଷ୍ପ
କାହିଁ ମୋ ଚମ୍ପକ ।

**୩୪**

କି ବାର୍ତ୍ତା
ଆଣିଛୁ ଭୃଙ୍ଗ
କହରେ ଢଗର ?
ଶୁକ୍ରାଚାର୍ଯ୍ୟ !!
ବୃଷପର୍ବା !!

ଅବା ଯେମନ୍ତ
ଉତ୍କ୍ଷେପିତ
ଅଭିମାନେ
ଅଭିଷିକ୍ତା
ଦେବଯାନୀଙ୍କର ।

'ମହାରାଜ
ଯେମନ୍ତ ହେଉ
ଦୂତର ବାଣୀ
ନଗରର
ଉପକଣ୍ଠେ
କାବ୍ୟର ସୁନୁ ।'

'ଯେମନ୍ତେ ନ
ପାଦ୍ୟ ଅର୍ଘ୍ୟ
ଅଥି ଶାନ୍ତିଲେ
ଜଳଗଲ
ଅଗ୍ନି ଉଠେ
ଚକ୍ଷୁ ଯୁଗଳେ ।'

ମହାରାଣୀ
ମଥା ପୋତି
ହୋଇ ବିମନା
ଅନ୍ତଃପୁରେ
ଯିବା ପାଇଁ
କରନ୍ତି ମନା ।

ବଳେ ହେଉ
ମହାରାଜ
ଅନ୍ତଃ ପୁରର
ମନ୍ତ୍ରୀଙ୍କ

ନିୟୋଗ
ଢେନା ହେଉ ପଦ୍ମରେ ।

ଶ୍ରୀ ଅଙ୍ଗରୁ
ଟମ ଗମ
ବହଳ ଝାଳ
ଝସୁଥିଲା
ପାଦ ତଳ୍କୁ
ପାବଚ୍ଛର
ଗୋଟି ଗୋଟି
ହେଲେ ପଥର ।

ସମୟ
କୁଣ୍ଡଳ ଭର୍ଙ୍ଗି
ପେଚକ ଚକ୍ଷେ
ମହାରାଜ
ଚଳୁଥିଲେ
ଉଦ୍ୟାନ କକ୍ଷେ ।

ନିର୍ବୀର୍ଯ୍ୟ
ଶରତ ମେଘେ
ଗୁଡ଼ାକ ପଂକ୍ତି
ଖୋଜୁଥିଲେ
ବର୍ଷା କାହିଁ
କାହିଁ ପ୍ରମୁକ୍ତି !!

୩୭

ସନ୍ଧ୍ୟାକାଶେ
ନୀଳ ମେଘ
ଲୋହିତ ଶାଢ଼ି

ଦେଖୁଥିଲେ
ଦେବଯାନୀ
ଯାଉଛୁ ଉଡ଼ି ।

କାନ୍ଦ କାନ୍ଦ
ହେଉଥିଲା
ରାଣୀଙ୍କ ମନ
ରୋଷ କଷାୟିତ
ପୁଣି ବେନ ନୟନ ।

ଏଇ ଶାଢ଼ି
ଆଣିଥିଲା
ଜୀବନେ ହସ
ଏଇ ଶାଢ଼ି
ଉପହାରେ
ସକଳ ପ୍ରାସ;

ମୁଣ୍ଡଟେକ
ହୋଇ ଗଲେ
ଧୂଳିଆ ମେଘ
ରକ୍ତାଂଶୁକ
ଶାଢ଼ି ଅବା
ପ୍ରମତ୍ତ ବାଘ ।

ଚିତ୍ତକୁ
ଓଟାରୁ ଥାଏ
ବେଳ ଅବେଳ
ଅଜସ୍ର
ହାକୁଡ଼ ଏବଂ
ପାକୁଳ ମେଳେ ।

ମହାରାଣୀ
ଝୁରୁ ଥିଲେ

ଜୀବନ ଧାର
ଶାନ୍ତି ବ
ଉଠାଏ ଝଡ
ଚତୁର୍ଦ୍ଦିଗେ
ପିଟୁ ଥାଏ
ଯୋଡ଼ ନାଗରା ।

ଶାନ୍ତି ଏବେ
ରୂପକଥା
ଶିଶର ବାଘ
ହଠାତ୍ ପାଏ
ଜୀବନ୍ୟାସ;
ମରଣ ଯୋଗ ।

ହୁଏତ କେ
ଲେଖି ଦିଏ
କପାଳେ ମୋର;
ପାଠ ଗଣି
ପାଠଶାନ୍ତି
ପାଣିର ଗାର ।

କହୁଥାଏ
ଦିବା ରାତ୍ରି
ଉଦ୍ୟାନ ପୁରେ
ନୀଲ ମେଘେ
ନୀଲ ଶଶି
ଉଇଁଲା ନବନେ ?

**୩୭**

ଗଛଡାଳେ

ବସିଗଲେ
ଦୁଇଟି ଚିଲ୍ ।

ରାଜପଥେ
ଜଳୁଥିଲା
ଲାଲ ନେଳୀ
ଦୁଇ ଆଲୁଅ ।

ମହାରାଜା
ଡାକୁଥିଲେ
ଶଙ୍ଖଚିଲଙ୍କୁ,
ଜୀବନର
ନୂଆ କ୍ଷେତ
ନୂଆ ଋତୁକୁ ।

ମାଟିଆ
ଚିଲଟି
ହଠାତ୍
ଚକ୍ର ମାରି
ଅକସ୍ମାତ
ହୋଇଗଲା
ଗୋଟିଏ ପକ୍ଷୀ ।

ଛଟ ପଟ
ହୋଇଯାଏ
ରଜାଙ୍କ ମନ
ଦୁକୁ ଦୁକୁ
ସ୍ମୃତି ତଳେ
ଉଜୁଡ଼ା ଜହ୍ନ ।

ଉଦେ ହୁଏ
ସତେ ଅବା

ନୟନ ଜଳେ;
ମହାରାଣୀ
ବସି ଥିଲେ
ଅଶ୍ୱତ୍ଥ ମୂଳେ ।

ଶୁକ୍ରାଚାର୍ଯ୍ୟ
ଗୁଣି ହେଲେ
ରକ୍ତ ମନ୍ଦାର
କାଳିକାର
ପୂଜା ଫୁଲ
ଯୁଗ ଯୁଗର ।

ଯଯାତି
ପାରନ୍ତି ନାହିଁ
ମୁହଁକୁ ଚାହିଁ
ଚାରିଆଡ଼େ
କଳ କଳ
ଯମୁନା ନଈ ।

ନତ ନେତ୍ରେ
କହୁ ଥିଲେ
ଜୀବନ ଧର୍ମ
ରୀତ ହୀନ
ଛନ୍ଦ ହୀନ
ସକଳ କର୍ମ ।

କେବେ ଯଦି
ଖୋଜୁ ଥିଲେ
ଜୀବନ ଠାଣି
କାହିଁ ସେହି
ମୀନ ଆଖି
ଅମୃତ ବେଣୀ ।

ମହାରାଜା
ପାରନ୍ତ ନ
ବଦନ ଟେକି
ତଳ ତକ
ମାଳ ମେଘ
ଦୁଇଟି ଆଖି ।

ହୋଇଲେ
ସଞ୍ଜୋଇ ତାରା ।
ଖୋଜି କାହାକୁ
ଜହ୍ନ ବି
ଅଜପା ମନ୍ତ୍ରେ
ଡାକେ ତାରାକୁ ।

ସୂର୍ଯ୍ୟ ଏବେ
ଅସ୍ତ ଯାଏ
ପଦ୍ମକୁ ଭାଳି
ଆକାଶଟା ।
ରଡ଼ ନିଆଁ
ଛାଡ଼ି ବୋବାଳି ।

ଫୁଲ ବଗିଚାରେ
ଲୁବ୍ଧ
ସମୀର ବୁଲେ
ସ୍ପନ୍ଦନର
ଶେଷ କାହିଁ
ଭବ ଶଯ୍ୟରେ

୩୮

ହ୍ରଦ ନା ଆକାଶ
ଆକାଶ ନା ଗୃହ
ଗୃହର ଆନନ୍ଦ
କହିଁ ବାଜେ
ଗୁଣ୍ଡି ଗୁଣ୍ଡି ନାଦ ।

କାହାର ଏ
ସୁଖର ସନନ୍ଦ
କାହାର ବା
ଦୁଃଖର କୁସୀଦ ।

ଧରି ଆସେ
ଏ ସମସ୍ତ
ସତେ ଅବା
ଧୂଳି ଖେଳ ସାଥୀ
ଅସୁମାର
ସ୍ୱପ୍ନଙ୍କର
କାଯ୍ୟାକଳ୍ପ,
ଅବା କେଉଁ
ଅଙ୍କିତ ହୃଦନ୍ତ ।

କହିଯାଏ
କାନେ ମୋର
ଜହ୍ନ ଆଲୁଅରେ
ତାରାଙ୍କର
ଛୁଇଁ ନିଦ
ଭାଙ୍ଗି ଗଲା ବେଳେ ।

ହୁଏତ ମୁଁ
କହୁଥାଏ—

'ଆସ ଯେତେ
ମୋ ମନର ଫୁଲ
ଫୁଟି ଯାଅ
ଏ ଘଡ଼ିକ
ଅକସ୍ମାତ
ଆଶିଷ'ରେ
ଜହ୍ନ ଫୁଟା ବେଳ ।

ସବୁ ସନ୍ଧ
ଉଡ଼ିଯାଏ
ଚଇତ୍ର ହାଓ୍ୱାରେ
ସବୁ ସନ୍ଧ
ଝଡ଼ିଯାଏ
ବୈଶାଖୀ ଝଡ଼ରେ ।

ମୁଁ କହିଲି
ରେ କୋଶାର୍କି
ତାକେ ନେବେ ଗୁହାଁ;
ଝାମ ଲାଗେ
ଅଙ୍ଗେ ମୋର
ମୁଁ ବି ଏକ
ଦରପୋଡ଼ା ଗାଆଁ ।

ଶୁଣି ଅନୁଯୋଗ
ଦେବଯାନୀ
ଅଙ୍ଗେ ଅବା
ମାଂଘେଂଇ ପରବ ।
ଆଖିରେ ତା
ଅଗ୍ନିର ତାଣ୍ଡବ ।

ଦେଖି ଅବା
ଭୁଲି ଗଲି

ପଦ୍ମ ତୋଳା ଗୀତ
ଚତୁର୍ଦ୍ଦିଗେ
ସର୍ପ ମେଳା
ସର୍ପ ଆତଯାତ ।

ଦେହେ ମୋର
ଅନାଇଲେ
ସର୍ପଙ୍କ ବେଢ଼ଣି
କାଳ ସର୍ପ
ଦେହେରେ ବସେ
ଦିବସ ରଜନୀ ।

୬୪

ପିଅର ହେ
ଦୋଳା ହେଉ
ଏ ଘନ ନତ
ନଅରକୁ
ବିଜେ ହେଉ
ହେ ମହାମତ ।

କହ ମୁହିଁ
କାହିଁ ଥିଲି
ଭୂଇଁର ଗାର
ହଠାତ୍ ଶୁଭେ
କାଳ ରଢ଼
ଅଶନି ସ୍ୱର ।

'ତୁମେ ଟିକି,
ମହାରାଜ

ତୁମେ ଟିକ
ପାପ ପୁଣ୍ୟର
ସେହି ନ୍ୟାସୀ
ସାରା ବିଶ୍ୱର ।

ଯେଉଁଠି
ଖୋଜଇ ଶିବ
ଗୋଟିଏ ଶକ୍ତି
ସେଉଁଠି
ଅଦ୍ୱୈତ;
ନାହିଁ, ଦ୍ୱୈତର ରଙ୍ଗ ।'

କହି ଋଷି
ହୋଇଗଲେ
ଆଗ୍ନେୟ ଗିରି
ମୋ ଦେହେ
ପାଉଁଶ ଯାକ
କେ ଦିଏ ବୋଳା ।

ଅଗ୍ନିକଣ
ଖସି ଉଠେ
ପରିତ୍ୟକ୍ତ
ଇଲାକାର
ଭଙ୍ଗା କୁଟୀର
ହାତେ ମୋର
ଜବ୍ ଥାଳ
ଯୁଗ ଯୁଗର ।

ମୋ ଆଖି
କୋରଡ଼ କେତେ
ମାପିବା ପାଇଁ
କିଏ ଅବା

ଦେଉଥାଏ
ହାତ ବଢ଼ାଇ ।

ସ୍ୱପ୍ନ ଯେତେ
ଛୁଇଁ ଗଲେ
ଗଗନ ସାରି,
ମୋ ପଳତ
ନଖ ଦନ୍ତ
କଣ୍ଠେ ମୋର
ଗଜରା ମାଳା ।

ମୁଁ ଶୁଣିଲି
ମିଠି ମିଠି
ଦେବଯାନୀଙ୍କୁ
'ଏ କି ମୋର
ସ୍ୱପ୍ନଭଙ୍ଗ,
ଆଜି ଏ କି
ଦେଖିଲି ଆଖି ।'

କହି ସେତକ
ଗଡୁଥିଲେ
ପିଛୁ ଚରଣେ
ଥରଥର
ମୋ ହାତକୁ
ଥାପି ଲପଟେ ।

କହୁଥିଲେ
ତୁମେ ମୋର
ଜୀବନସାଥୀ
ଅର୍ଦ୍ଧାଙ୍ଗିନୀ
ଲୀଳା ରୂପ
ଅଭେଦ ମୂର୍ତ୍ତି ।

୪୦

ଥମ ଥମ ନଭେ
ପୂର୍ବେଇ ବାଆ
ଯୋଆଡ଼େ ଗୁହାଁଲେ
ମନେପଡ଼େ ତୁମ'
ଜରଗ୍ରସ୍ତ କାୟା ।

କାନ୍ଦ କାନ୍ଦ ହୁଏ
ଶୁଭ୍ରବର୍ଣ୍ଣ ମୁହିଁ
ଭବାମିରେ ଡାକେ
ତୁମକୁ ଗୁହାଁ ।

'ଦୁର୍ଗନ୍ଧ ନାଶିନୀ
ହେ ଦୁର୍ଗା ମାଆ
ଜରାଗ୍ରସ୍ତ ନାଥେ
ହୁଅ ଗୋ ସାହା';

ସବୁ ଦୁର୍ବିପାକ
ଆଣିଲ ଡାକ
ସବୁ ଅଘଟଣେ
ମୁହିଁ ତ ସାକ୍ଷୀ ।

ମନ ରେରଣୀ
ପାଇଲ ଫଳ
ହେ କନ୍ୟା ସୁହାଗୀ
ପିଅର ମୋର ।

ତୁମ ଅଭିଶାପ
ବେଦର ଗାର
କନ୍ୟାରେ ତୁମେ
ପ୍ରଦାନ କର ।

ଦିଅ ମୋତେ ତାତ
ବାର୍ଦ୍ଧକ୍ୟ ଭିକ୍ଷା

ସ୍ୱାମୀ ଅନୁଗାମୀ
ହେବାକୁ ଶିକ୍ଷା;

ଦେଇଥିଲ ମୋତେ
ବିବାହ ବେଳେ
ସେ କରୁଣା ଉଣା
ନୋହୁ ଏ କାଳେ ।

କହି କାନ୍ଦୁଥିଲି
ବାରକୁ ବାର
ଧୂଳୁ ଧୂଳ ଚର୍ମେ
ଶିଥିଳ ତନୁକୁ
ସ୍ପର୍ଶିଲି ବେଳକୁ
ମାଡ଼ଇ ଡର ।

କଅଣ କରିବ
ପାରେନ ଭଲ
ରାଣୀ ହୋଇ ଯଦି
ହେଲି ବାହାଳ ।

ପିତା କହୁଥିଲେ
ଶୁଣ ବାୟାଣି,
ଫେରଇ କି କେବେ
ବୋହିଲି ପାଣି ।

ତଥାପି ଅଛଇ
ଗୋଟାଏ ବାଟ
ଜରା ବଦନମଧ୍ୟେ
ଯୌବନ ଭେଟ ।

ଅବଶ୍ୟ ଘଟିବ
କଲେ ପ୍ରୟାସ
ଯଉବନ ଦାନେ
ଜରାର ନାଶ ।

କନ୍ୟା ପିତା ଯଦି
କଲେ ପ୍ରୟାଣ ;
ଦମକାଏ ମେଘ
ହଠାତ୍ ଆଣେ କ
ଅଭିଗମ ପାଇଁ
ନୂଆ ସ୍ୱପନ ।

୪୧

ମୁହଁରେ ଉଗର
କରେ ପ୍ରଗ୍ଭର
ରାଇଜ ସାରା ;
ଡମ୍ବ ଡମ୍ବ ନାଦେ
କମ୍ପାଇ ଧରା ।

'ଶୁଣ ରାଜପୁତ୍ର
ଶୁଣ ଅମାତ୍ୟ
ଏକାନ୍ତ ଗହନ
ଏ ମହା ତଥ୍ୟ ।

ଚନ୍ଦ୍ର ମଣ୍ଡଳେ
ରାହୁର ଛାଇ
ଘୂରିଆଡ଼େ ଦିଶେ
ବୈଶାଖୀ ନଈ ।

ରାଜା ଖୋଜୁଛନ୍ତି
ନୂତନ ମେଘ
ଜୀମୂତ ବାହନେ
ବିଶ୍ୱ ସ୍ୱର୍ଗ ।

ଶୁଣ ରାଜପୁତ୍ର
ହେଜ ଅମାତ୍ୟ

ମହାରାଜାଙ୍କର
ଜୀବନ ବ୍ରତ ।

'ଯିଏ ଦେବ ମୋତେ
ଦ୍ୱିଗୁଣ ସ୍ୱର୍ଗ
ଯିଏ ଦେବ ମୋତେ
ଦ୍ୱିଗୁଣ ବର୍ଗ
ଯୌବନ ପର୍ବ ।

ସେ ହେବ କେବଳ
ରାଇଜ ନାହା
ବଜାରେ ନାଗରା
ବାଜରେ ଢେଙ୍ଗୁରା
କହରେ ଏହା';

ଡବ ଡବ ଡବ
ମହାରାଜାଙ୍କର
ଜୀବନ ବାର୍ତ୍ତା
ଗାଏ ବୈତାଳିକ
ଗାଏ ମୁଁ କବି ।

ଚଉଆଡ଼େ ଶୁଭେ
ଢେଙ୍ଗୁରା ନାଦ
ରଜାର ଖିଆଲ
ରଜାର ହୁକୁମ
ମଣିଷ ଜାତିର
ଅଦ୍ଭୁତ ସାଦ ।

ମେଣ୍ଟି ନାହିଁ କାହିଁ
କୌଣସି କାଳେ
ସିଢ଼ିରେ ଚଢ଼ିଲେ

ଆଉ ଏକ ସିଡ଼ି
ନୟନେ ଖେଳେ ।

ଯୌବନ ଆସିଲେ
ମଣିଷ ଝୁରଇ
ବାଲ୍ୟର କାଳ
ବାର୍ଦ୍ଧକ୍ୟ ପଶିଲେ
ଚିତ୍ତ ଖୋଜଇ
ଯୌବନ ମେଳ ।

ଏଇ ତ ମଣିଷ
ଜାତିର କଥା
ଏଇ ତ ମଣିଷ
ଜାତିର ବ୍ୟଥା;

କାଳ କାଳ ଧରି
ଡେଙ୍ଗୁରା ନାଦ
ଦୁଃଖ ଶମିବାକୁ
ଅଛି ତ ଏକ
ମନ୍ତ୍ର ପଦ ।

ଡ଼ିବ ଡ଼ିବ ଡ଼ିବ
ମଣିଷ ଜାତିର
ଅଜବ ଘୋଷଣା
ଶୁଣ ସଭ୍ୟଜନ
ଶୁଣ ରାଜପୁତ୍ର
ଶୁଣାଏ କବି ।

୪୨

ରାଜକୁଳ ଇନ୍ଦ୍ର,
ମୁହିଁ ତ ଯଦୁ,

ଦେହରୁ ଯୌବନ
ଆଖିରୁ ମଧୁ ।

କେମନ୍ତେ ଦେବ ମୁଁ
କହରେ କହ
ଅଡୁଆ ସୂତା ଏ
ଧରି ହୁଏ ନାହିଁ
ଯାହାର ଖିଅ ।

କେମନ୍ତେ ପିନ୍ଧିବ
ଜରିର ପୋଷାକ
କେମନ୍ତେ ଧରିବ
ହାତରେ ବାଡ଼ି
ଲୋଡ଼ା ନାହିଁ ମୋର
ରାଜାଙ୍କ ଶିରପା
ଲୋଡ଼ା ନାହିଁ, ମୋର
ଧନ କଉଡ଼ି ।

ଦେଖିକି ଯାଅ ହେ
ଦେଖିକ ଯାଅ,
ଢେଙ୍କୁରା ଶବଦେ
ଉଠେ ମୋ କୋହ ।

ବୋଲି କହୁଥିଲେ
ଯୁବ ରାଜନ
ମଣିମା ଶୁଣିମା
ହେଉ ବଚନ ।

କହ ମୁଣ୍ଡ ପୋତେ
ଡଗର ମୋର
ଆଖିରେ ବସୁଥୁ
କଳା ଭ୍ରମର ।

ଲୁଚି ଯାଉଥିଲା
ରାଣୀ ବଦନେ

ମୋ ହନୁ ହାଡର
ଘର୍ମ ପୋଛୁଥିଲେ
ପାଠ ବସନେ ।

ଅଗ୍ନେକ ମୁଁ ବା
ହୋଇ ଯାଉଥିଲି
ବାଘୁଆ ମେଘ ।
ହାଡ଼ର ଗହ୍ୱରେ
କାହାର କଣ୍ଠ ?
କୈନ୍ଦୂଳ କ୍ଷେତରେ
କାହାର ହେଣ୍ଟାଳ ?
ପଛରେ ମୋହର
କିଏ ବା ଆସୁଛ ?
ଦେଖି ପାରୁଛୁ କି
କାନ୍ଧରେ ମୋହର
ଦୁଇଟି ହରିଣୀ
ଶାଆଁଳା ଶବ ।

**୪୩**

ଭୁବସ୍ୱ ମୁଁ
ସର୍ବସ୍ୱ ମୋ
ଦେହର ଜ୍ୟୋତି
ଯୌବନେ ମୋ
ଜୀବନେ ମୋ
ଅଖଣ୍ଡ ରକ୍ତ ।

ଗୁଡ଼ବ କେହ୍ନେ
ହଂସୁଲି ଶେଯ
ପୂନେଇ ଛଥି

ହେଉଜବ ଟେକେହେ
ବାସାଂସି
ଜୀର୍ଣ୍ଣାନି
ଦେହ ପ୍ରମୁକ୍ତ ।

ଜୀବନବାଧା ମୁଁ
ଜୀବନ ଲାଳସୀ
ସ୍ୱପ୍ନେ ବଞ୍ଚେ,
ଧରିବ କେସନେ
ଜରାର 'କା' ମୁଁ
ଜୀବନ ମଞ୍ଚେ ।

ଅନଙ୍ଗ ରଙ୍ଗେ
ରଙ୍ଗ ଅଧର
ଝୁରଇ ନିତି;
ଜରାର ଘରେ
ଝଡ଼ିବା ଫୁଲେ
ନାହିଁ ମୋ ପ୍ରୀତି ।

କହିଲା ବେଳକୁ
ରାଜକୁମାର
ଉଠିଲି ମୁହିଁ ତ
ରାଇଜ କବଚ
ରଜାର ସ୍ୱର ।

ଚକଟେ ଗୁହିଁଚ
କାହିଁ ବା ବାଟ
କପଶ ଫିଟିବ
କଂସା କବାଟ ।

କାନ୍ଧରେ ଡେଙ୍ଗୁରା
ହାତରେ ବାଡ଼ି

ପିଚି ପିଚି ମୁହାଁ
ବେଦମ ହେଲଣି
କାହିଁ ମିଳୁଛି ବା
ଯୋଡ଼ ପଗଡ଼ ।

୪୪

ଭାବୁଥିଲି
ମୁଁ କି ଏକ
ରାହୁଗ୍ରସ୍ତ ଜହ୍ନ;
ଏକ ପାଦ
ମୋକ୍ଷ ମୋର
ଏକ ପାଦ ମଗ୍ନ ।

ତାରା ଯେତେ
କାନ୍ଦୁଥିଲେ
ମନ ଅଗଣାରେ
ଜରାଗ୍ରସ୍ତ
ରଜନୀର
ଅନ୍ତିମ ପ୍ରହରେ ।

ଖଣ୍ଡି ଖଣ୍ଡି
ହେଉଥିଲି
ପାହାନ୍ତି ପବନ;
ସମୟର
ବାଲିକୁଦେ
ପୂରୁ ଅବା
ଶେଷ କଡି
ମୁଁ ବା ଏକ
ହଂସପାଦ ଜହ୍ନ ।

ଲୋଡ଼ୁଥିଲି
ଅପମୃତ୍ୟୁ
ଲୋଡ଼ୁଥିଲି
ହୁଏତ ପ୍ରୟାଣ,
ଜୀବନର
ଅନ୍ୟ ନାମ
ଯନ୍ତ୍ରଣା ଜୀବନ ।

ମୁଁ ଯଦି
ପାତାଳ ହୁଏ
ଗତି ଦେଇ
ଏକ ସୁ ମୂରତି
ହୋଇପାରେ
ଚତୁର୍ବର୍ଗ
ହୋଇପାରେ
ସାରୂପ୍ୟ ମୁକତି ।

ନିରନ୍ତର
କଳୁଥାଏ
କ୍ଲାନ୍ତ ନୟନରେ
ପାରାବତ
ପାଳକାର
ଘୁମୁରା ଡାକରେ ।

ଅବା ଆସେ
ଶେଷ ସ୍ୱପ୍ନ
ଏକମାତ୍ର ସୂତ୍ର
ଏ ଦେହର
ପ୍ରତି ଲୋମେ
ହୋଇପାରେ

ମନ୍ତ୍ରଦ୍ରଷ୍ଟା
ହୋଇପାରେ ଗୁରୁ ।

୪୫

ପୃଥ୍ୱୀରେ
ସକାଳ ହେଲା
ମୋ ଆଖିରେ
ହଠାତ୍ ସକାଳ ।
ଶ୍ଳଥ ଚର୍ମେ
ନୂଆ ଖଗ୍ର
ହଳଦୀ ରଙ୍ଗର ।

ବୋଲ ପୁରୁ
କହୁଥିଲା
'ମୁହିଁ ଶବକର
ମୋ ତନୀରେ
ତୁମେ ଯୁବା
ମୁଁ ହେଲ ସ୍ଥବିର ।'

ଅଗ୍ନିକ
ମୋ ଆଖିର
ଲୁହ ଯେତେ
ହେଲେ ନୂଆମେଘ ।
ମୁଁ କାନ୍ଦଲି
ତା'ରେ ଗୁହିଁ
ସହିତ ମୋ
ଦେହେ ଦେଖେ
ବାର୍ଦ୍ଧକ୍ୟର ମେଳ ।

କଏ କେତେ
କହୁଥିଲେ
ମଲ୍ଲୀମାଳ ଧରି
ମୋ ଅଖିତୃଷ୍ଣାସ୍ନା ଖେତ
ପ୍ରଦକ୍ଷିଣ କରି ।

ଗୁନ୍ଥୁଁଥିଲେ
ଆଉ ବାଗେ
ମୋ ନୂଆ କୃଷିକୁ
ଥୋଇ ଦେଇ
ବାରମ୍ବାର
ଆଖିରେ ଆଖିକୁ ।

ସ୍ମରୁଥିଲି
ହେ ଧରିତ୍ରି
ହେ ଧରମୁ ଦେବ
ଦିଅ ମୋତେ
ନୂଆ ବାସ୍ନା
ଜଳାଳ ପରବ ।

୪୭

ଅଣିଣ
ଆସିଲା ପୁଣି
ଦୁର୍ଦ୍ଦାନ୍ତ ଅଣିଣ
ଦେହ ମନ
କୁତୁ କୁତୁ
ମୁଁ ଅବା ବହ୍ନଣ ।

ହେଉଥିଲି
ପୁନଃ ପୁନଃ
ଅଶୋକ ବନକା
ଦରବୁଜା
ରକ୍ତପଦ୍ମେ
ବିଷଣ୍ଣ ଗର୍ଭିକା ।

ଯଉ କଏ
ନାଚିଯାଏ
ମୋର ସାମନାରେ
କଇଁ ବଣେ
କଇଁ କଇଁ
ଶୁଭୁଥିଲି ବେଳେ ।

କି ଫୁଲ
ଖୋଷିବ ଭାବେ
ତାର କବରୀରେ
ଶୁକ୍ଳାଭିସାରିକା ସେ ଯେ
ଅଗଣିତ ଟଗର ଓ
ଜହ୍ନ ଆଲୁଅରେ ।

ହୁଏତ ଗୁନ୍ଥିବ ମାଳା
ହୁଏତ କହିବ ବାଳା
'ତୁମ ଶୁକ୍ଳପ୍ରଭା
ମୁହିଁ ଶୁକ୍ଳଗର୍ଭା
କି ମହାଯୋଗରେ ।'

ଫୁଲ ପୁଣି
ଝରିଯିବା
ହୋଇ ରୂପାନ୍ତର
ମୁହିଁ ତୁମ

ଗୌଣ ଏବଂ
ତୁମେ ମୋ ଶଙ୍କର ।

କେତେ ତପ
କରୁଥିଲି
ସ୍ୱପ୍ନେ ଜାଗରଣେ
ତୁମେ ମୋର
ଶତ ପୁଣ୍ୟ
ତୁମେ ଦେବ
ଶୁକ୍ଳ ଧାନ୍ୟ
ଅକ୍ରମ ଶୟନେ ।

**୪୭**

ଭୂଜ ବ ବଲ୍କଶ
ବଲ୍କଶ ବ ଶେଯ ।
ଶୋଇ ଶୋଇ
ମୁଁ ହାଲିଆ
ଦେଖି ଦେଖି
କଳା ହସ
ରଜ ସଜବାଜ ।

କାଏ ଆସ
ତୁମେ ନାଶ
ଧର ପଖଉଜ
କାଏ କର
ମୋ ପୃଥ୍ୱୀରେ
ବଚଣ ପଦ୍ମଜ ।

ମୁଁ ଅଣନଃଶ୍ୱାସୀ ଆଜ
ମାଟିର ଗନ୍ଧରେ

ମୁଁ କାନ୍ଦଇ ଅହରହ
ଯନ୍ତ୍ର ଆଷାଢ଼ରେ
ନୂଆ ପତ୍ର କଅଁଳୁଛି
ଯେଉଁ ଜଙ୍ଗଲରେ ।

କାଏ ଫିଙ୍ଗ
ମୋ ମୁହଁକୁ
ମୁଠାଏ ପାଉଁଶ
ଖତେଇ ଖତେଇ କାଏ
ହସ ଅହର୍ନିଶ ।

ମୁଁ ଯନ୍ତ୍ର
ନକଲ ବାଘ
ବିଷ୍ଣୁ ଶର୍ମାଙ୍କର;
ମୋ ଦେହରେ
ବାଘ ଛାଲ,
ମୁଁ ଏକ
ନକଲ ନଶଣ
ଅବା ସେହି
ସଂଜୀବକ
ବଳୀବର୍ଦ୍ଦଟିର ।

ଲେଲିହାନ
ଚିତା ଜଳେ
ପର୍ବତ ପ୍ରମାଣ
ଯୌବନ
ପାଗଳ ମୁହିଁ
ଦେହେ ମୋର
ଖୁନ୍ଦି ହୁଏ
ଅପ୍‌ସରା ଯୌବନ ।

ଖଣ୍ଡିକାଏ
ମୋର କଏ
ଦେଖି ଏ ରୂପକୁ
ଜୀବନର
ଶେଷ ସୂତ୍ର
ଲୀଳା ପଦ୍ମଟିକୁ ।

ହୁଏତ
ଓଠାର ନେଲ
ଦର୍ପିତ ଭଙ୍ଗୀରେ
ହେ ଶର୍ମିଷ୍ଠା
ହେ ଧରିତ୍ରି
ଷମ ଦସ୍ପିତରେ ।

## ୪୮

ଷମା ଏକ ଜୀମା
ନାସ୍ତ ପାଇଁ;
ଜନମୀ-ନରଷ ବୃତ୍ତେ
ତୁମେ ନେଉ
ବାର ପାତ
ମୁହିଁ ଖୋଜେ
ଉତ୍ତାପ ଓ
ସ୍ନେହର ଦ୍ରାଘିମା ।

ଷମା ଖାଲଖମା
ତୁମ ପାଇଁ
ଜନକ-ବରଫାବୃତ୍ତେ
ତୁମେ ଗଢ଼
ପଞ୍ଜରର
ଶବ୍ଦିତ ପ୍ରତିମା ।

ମୁଁ ବ ଯଦି ନାଶ୍ମ
ମୋ ଜାୟାଙ୍କୁ
ଖୋଜ ନଏ
ମାତୃଭୂର
ନିତ୍ୟ ଗୋଦାବରୀ ।

କେସନେ
ଗୃହିଁବ ମୁହିଁ
ସେହି ତନୟରେ
ଫୁଟିଥିଲ
ଯେତେ କଅଁ
ରକ୍ତରେ ରକ୍ତରେ ।

ସିଏ ଆମ
ଶେଷ ସାକ୍ଷ୍ୟ
ଶେଷ ଇସ୍ତାହାର
ଜୀବନର
ଶେଷ ଫୁଲ
ତୁମର ଓ ମୋର ।

କେମନ୍ତେ
ମକଚି ଦେଲ
ହାତ ପାପୁଲରେ
ଜାଳଥାନ୍ତା
କଅଁ ସିଏ
ଆମର ମୁହଁରେ ।

ତୁମେ ପରା
ମହାରଜା
ଶୀଳ ଓ ଧର୍ମର
ତୁମେ ପରା
ପ୍ରଜାପିତା
ଏଇ ଭୂଖଣ୍ଡର ।

ଭୁଲିଗଲି
ଧର୍ମ କର୍ମ
ଯେତେ ଲୋକାଗ୍ନର
ହୋଇଗଲି
କୁଢ଼ କୁଢ଼
ପାଉଁଶ ଓ
କେଇଟି ଅଙ୍ଗାର ।

୪୯

ଯୌବନ ବି
ଅଭିଶାପ
ରୂପର ଏ
ଶେଷ ଷଠୀଘର
ଉଦ୍‌ବାସ୍ତୁ
ଜୀବନ ପାଇଁ
ଅବା ତାହା
ପାନ୍ଥଶାଳା,
କ୍ଷୀର ବେଳଟାର ।

ମୁଁ ଦେଖିଲି
ଯେତେ ପାଣି
ସବୁ ମୃଗତୃଷ୍ଣା
ମୁଁ ପିଇଲି
ଯେତେ ବାସ
ମେଣ୍ଟେ ନାହିଁ ତୃଷ୍ଣା ।

ଆଲୋକ ବି
ଏକ ହାହାକାର
ନଥିଲେ ଅନ୍ଧାର,
ଜରା ଯଦି

ଯୌବନର
ଶେଷ ଉପହାର ।

ମୋ ନଜର
ଗ୍ଲାଇ କାହିଁ
କାହିଁ ମୋର
ନଜର ଆଲୁଅ ।
ମୁଁ ବ ଏକ
ମୃତ ଜହ୍ନ
ରାଜ୍ୟ ଗୋଟାକର ।

ବାରମ୍ବାର
ମରେ ମୁହିଁ
ନଜକୁ ଦେଖିଲେ,
ମୋ ଆତ୍ମାର
ପ୍ରତିରୂପ
ପୁ ରୁ ଆସିଗଲେ ।

ମାଗଇ ମୁଁ
ଦିଅ ମୋତେ
ପୁନଶ୍ଚ ଜୀବନ
ମରିବାର
ଭାଗ୍ୟ ମୋର
ବଞ୍ଚିବାର
ଯେତେ ପ୍ରଦୂଷଣ ।

ଦୂର କର
ତୁମେ ମୋର
ଦ୍ୱିଖଣ୍ଡ ଜନକ;
ଯୌବନର
ବିଶ୍ୱକର୍ମା
ଜୀବନର

ମହାଋଷି
ହେ ଶେଷ ଜାତକ ।

୪୦

ଲହ ଲହ
ହୁତାଶନ
ଘରେ ଓ ବାହାରେ
ଧୂଆଁ କର
ଶୋଭଯାତ୍ରା
ମନ ଓ ମନରେ ।

ମୁଁ କାଲୁଷ୍ଟ
ମୁଁ ସଂତପ୍ତ
ଆତ୍ମ ଦହନରେ,
ପାଉଁଶ
ମୁଠାଏ ଫିଙ୍ଗେ
ଯାହାକୁ ଦେଖିଲେ ।

କହୁଥାଏ
ମୁହିଁ ରାଜା
ମୁହିଁ ସ୍ରଷ୍ଟା ଜନ
ମୋ ଦେହେ
ପାଉଁଶ ଗଦା
ହରଣ ଭରଣ ।

ଦେଖୁଛ କ
ଦେହ ସାର
କେବଳ ପାଉଁଶ
ଢ଼ିମା ଢ଼ିମା
ମୋ ଆଖିର
କ୍ରୂର ଅଟ୍ଟହାସ ।

ମୋ ଛାଇରେ
ନାଚ ଯାଏ
କାମନାର ବହ୍ନି
ମୁଁ ବି ଏକ
ବହ୍ନିମାନ
ଦୁରନ୍ତ ଅଶନ ।

ମୋତେ ଏବେ
କରିଦିଅ
ଶ୍ୟାମାପ୍ତି ତ
ମୁଠାଏ ପାଉଁଶ
ପୁରୁ ତୁମେ
ଆତ୍ମା ମୋର
ମୁଁ ବି ତୁମ
ଆତ୍ମଜାତ ଶିଷ୍ୟ ।

ମୁଠାଏ
ପାଉଁଶ ଧରି
ଗୁହେଁ ବାରମ୍ବାର
ହୁଏତ ଆସିବ ତୁମେ
ହୁଏତ ଆସିବା ଆମେ
ହୁଏତ ଏ ଯୋଡାଭୁମେ
ଗୁଲଥିବ
ଯୌବନ ଓ
ଜରାଙ୍କର
ନିତ୍ୟ ଅଭିସାର ।

---